# ବିକ୍ରମୋର୍ବଶୀ

ନାଟକ ।

(ଅନୁବାଦ)

ପୁରାଣମିତ୍ୟେବ ନ ସାଧୁ ସର୍ବ୍ବଂ
ନଚାପି କାବ୍ୟଂ ନବମିତ୍ୟବଦ୍ୟଂ
ସନ୍ତଃ ପରୀକ୍ଷ୍ୟାନ୍ୟତରଦ୍ଭଜନ୍ତେ
ମୂଢ଼ଃ ପରପ୍ରତ୍ୟୟନେୟବୁଦ୍ଧିଃ ।

ଶ୍ରୀ ମୃତ୍ୟୁଞ୍ଜୟ ରଥ
ପ୍ରଣେତା ଓ ପ୍ରକାଶକ ।

# ଭୂମିକା ।

ମୁଁ ପ୍ରାୟ ଦୁଇବର୍ଷ ପୂର୍ବେ ସଂସ୍କୃତର ବିକ୍ରମୋର୍ବଶୀ ଏବଂ ମୁଦ୍ରାରାକ୍ଷସ ନାଟକର ଅନୁବାଦ କରିଥିଲି । ଉତ୍କଳଭାଷାରେ ଅଭିନେୟନାଟକର ସଂଖ୍ୟା ବିରଳ ଦେଖି, ମୁଁ ନାଟ୍ୟଶାସ୍ତ୍ରରେ ନିତାନ୍ତ ଅପ୍ରବିଷ୍ଟ ଥିଲେହେଁ ଏହାକୁ ଅଭିନୟୋପଯୋଗୀ କରିବାରେ ଯଥାଶକ୍ତି ଚେଷ୍ଟା କରିଅଛି । ଏଥିରେ ମୂଳଗ୍ରନ୍ଥର କୌଣସି ପଂକ୍ତି ବା ସେଥିର ଭାବ ପରିତ୍ୟକ୍ତ ହୋଇ ନାହିଁ ; କେବଳ ସଙ୍ଗୀତର ସୌଷ୍ଠବ ଅନୁରୋଧରେ ମୂଳର ଯଥାସମ୍ଭବ ପରିବର୍ତ୍ତନ କରି ଯାଇଅଛି । ଏଥି ମଧ୍ୟରେ ମୋହର ଜଣେ ବନ୍ଧୁ ବିକ୍ରମୋର୍ବଶୀ ପ୍ରକାଶ କରିବାର ଦେଖି, ମୁଁ ଏହାର ମୁଦ୍ରଣ ସ୍ଥଗିତ ରଖିଥିଲି । କିନ୍ତୁ ସେ, ମୂଳଗ୍ରନ୍ଥର ଅନେକାଂଶ, ବିଶେଷତଃ ଚତୁର୍ଥଅଙ୍କର ଅଧିକାଂଶ ବର୍ଜନ କରିଥିବାରୁ ସେହି ବର୍ଜିତ ଅଂଶର ସୌନ୍ଦର୍ଯ୍ୟ ସମାଜଙ୍କୁ ପ୍ରଦର୍ଶନ କରିବା ପାଇଁ ମୋହର ପ୍ରକାଶ ବାସନା ବଳବତୀ ହେଲା ଏବଂ କେତେକଜଣ ଅଭିନେତୃବନ୍ଧୁ ପ୍ରକାଶାର୍ଥ ମୋତେ ପୁନଃପୁନଃ ଅନୁରୋଧ କରିବାରୁ ମୁଁ ଉପାୟାନ୍ତର ନ ଦେଖି ସ୍ୱହସ୍ତରେ ମୁଦ୍ରଣବ୍ୟୟ ବହନକରି ପ୍ରକାଶ କରିବାକୁ ସାହସୀ ହେଲି । ଉତ୍କଳର ଗ୍ରାହକମାନଙ୍କଠାରେ ଏହା ଆଦର ଲାଭ କଲେ ପରମ ସୌଭାଗ୍ୟ ମଣିବି । ମୋହର ଏ ପ୍ରଥମ ଉଦ୍ୟମରେ ଏଥିରେ ଅନେକ ଦୋଷ ଦୃଷ୍ଟ ହେବାର ସମ୍ଭାବନା । ଆଶାକରେଁ ଗୁଣଗ୍ରାହୀମାନେ ମୋତେ [illegible]ରି, ସେହିସବୁ ଦୋଷ ପ୍ରଦର୍ଶନଦ୍ୱାରା ଉପକୃତ କରିବେ ।

ପରିଶେଷରେ, ମୋହର ସ୍ନେହାସ୍ପଦ ବନ୍ଧୁ ଶ୍ରୀମାନ୍ ଗୋବିନ୍ଦଚନ୍ଦ୍ର କାନନଗୋ ଓ ବାବୁ ଶ୍ରୀକୃଷ୍ଣ ମହାନ୍ତି ଏହି ନାଟକ ଅନ୍ତର୍ଗତ ସଙ୍ଗୀତର, ଉତ୍କର୍ଷବିଧାନରେ ସହାୟ ଏବଂ ମୋହର ପରମପ୍ରେମାସ୍ପଦବନ୍ଧୁ ଶ୍ରୀ ବ୍ରଜସୁନ୍ଦର ଦାସ ବି, ଏ ଏହାର ଶୀଘ୍ର ପ୍ରକାଶାଦରେ ଅନୁକୂଳ ହୋଇଥିବାରୁ ମୁଁ ସେମାନଙ୍କଠାରେ କୃତଜ୍ଞତା ଅର୍ପଣ କରୁଅଛି ।

କଟକ ୧ । ୧ । ୦୯ ଶ୍ରୀ ମୃତ୍ୟୁଞ୍ଜୟ ରଥ

ତେବେ ତୁମେ ଯାଅ ସମସ୍ତ ପାତ୍ରମାନଙ୍କୁ ସାବଧାନ କରାଇଦେବ ଯେପରି ସେମାନେ ନିଜ ନିଜ ବେଶଭୂଷାରେ ଉତ୍ତମରୂପେ ପ୍ରସ୍ତୁତ ଥିବେ ।

ପାରି—ଅଜ୍ଞା, ସେହିପରି କରାଇବି । (ପ୍ରସ୍ଥାନୋଦ୍ୟତ)

ସୂତ୍ର—ସେହିପରି କଣ ଚାଲି ଯିବ? ଗୋଟିଏ ଗୀତ ଶୁଣାଇବ ନାହିଁ । ଏ ନବ ବସନ୍ତରେ ସମସ୍ତେ ନବହର୍ଷ ଅନୁଭବ କରୁଛନ୍ତି । ଅତଏବ ଏହି ସମୟକୁ ଚାହିଁ ଗୋଟିଏ ଗୀତ ଗାଅ ।

ପାରି—ସବୁଠାରେ ଏହି ବସନ୍ତ ଗୀତ ! ହଉ,—

ସଙ୍ଗୀତ ।

ଭୃଙ୍ଗ ଭୃଙ୍ଗ ଗୁଞ୍ଜେ ଏ ମଧୁ ଯାମିନୀ
ନବ ଚୂତପଲ୍ଲବଫୁଲ ମଞ୍ଜୁ ହାସିନୀ ।
ହସିଲଣି ଜାତି ମାଧବୀ ସେବତି,
ଏ ସୁଖ ଯାମିନୀ ।
ବନେ ବନେ, ଏ ପବନେ,
ଚହଟିଲଣି ସୁବାସ ନବ-ଅବନୀ । ୧ ।
ଦେଖ କି ଢଳ ଢଳ ଶୀତ ଚନ୍ଦନୀ
କେଡ଼େସନ ଅହା ବିଶ୍ୱଜନ ମନମୋହିନୀ ।
ସେ ସୁଧାର ସାର ପିଇ ଅନିବାର,,
ମୁଗ୍ଧ ଧରଣୀ ।
କାହାରୀରେ, ଏ ବସନ୍ତେ
ବହୁ ନାହିଁ ଘନ ଘନ ପ୍ରେମ ବାହିନୀ । ୨ ।

(ନେପଥ୍ୟ—ଗୀତସ୍ୱରରେ)

କେ' ଅଛ କେ' ଅଛ
ଦେବ ହୃଦୟେଶ
ଉଦ୍ଧର ଉଦ୍ଧର
ଅମର ନରେଶ ।

ସୂତ୍ର—(ଶୁଣି) ଏ କଣ? ଗୀତ ପଛେ ପଛେ କ୍ରୁଦ୍ଧରୁ କରୁଣ ସ୍ୱରପରି

କଣ ଶୁଭିଲା ? (ଚିନ୍ତା କରି) ହଁ ହଁ, ଏଥର ଜାଣା ଗଲା—ନାରାୟଣ ମୁନିଙ୍କ ପ୍ରିୟତମା କନ୍ୟା ଉର୍ବଶୀସୁନ୍ଦରୀ ବୋଧ ହୁଏ କୁବେର ପୁରରୁ ଫେରି ଆସୁଥିବା ବେଳେ ବାଟରେ କୌଣସି ରାକ୍ଷସ ହସ୍ତରେ ପଡ଼ିଛନ୍ତି । ସେଥି ପାଇଁ ବୋଧ ହୁଏ ଅପ୍ସରାମାନେ କାତର ହୋଇ ଏପରି ଆର୍ତ୍ତନାଦ କରୁଅଛନ୍ତି । ହଉ—(ପ୍ରସ୍ଥାନ)

---

ଦୃଶ୍ୟ—ଶୂନ୍ୟମାର୍ଗ-ହେମକୂଟ ପର୍ବତ ଶୃଙ୍ଗ ।

( ଶୂନ୍ୟମାର୍ଗରେ ଅପ୍ସରାମାନଙ୍କର ଆଗମନ ଏବଂ ଅବତରଣ । )

ଅପ୍ସ— କେ' ଅଛ କେ' ଅଛ
ଦେବ ହିତକାରୀ,
ଉଦ୍ଧର ଉଦ୍ଧର
ଅମର ନାରୀ ।

(ରଥାରୋହୀ ରାଜା ପୁରୂରବାଙ୍କର ପ୍ରବେଶ ।)

ରାଜା—କିଛି ଭୟ ନାହିଁ-ଭୟ ନାହିଁ—ଅଉ ବ୍ୟାକୁଳ ହେବାର କାରଣ ନାହିଁ । ରାଜା ପୁରୂରବା ବର୍ତ୍ତମାନ ସୂର୍ଯ୍ୟପୂଜା ସାରି ଆପଣଙ୍କ ନିକଟରେ ଉପସ୍ଥିତ । ଏବେ କାହିଁକି ଉଦ୍ଧାର କରିବାକୁ ହେବ-କହନ୍ତୁ ।

ଅପ୍ସ—ଏ ଅସୁରମାନଙ୍କ ହାତରୁ—

ରାଜା—କଣ ? ଅସୁରମାନଙ୍କର ପୁଣି ଆପଣମାନଙ୍କଠାରେ ଅତ୍ୟାଚାର ?

ଅପ୍ସ—ମହାରାଜ, ଶୁଣନ୍ତୁ ; (ଗୀତ ସ୍ୱରେ)

ଇନ୍ଦ୍ରପଦାର୍ଥୀର ତପସ୍ୟା ଭଙ୍ଗେ
ଦେବରାଜଙ୍କର କୋମଳଶର ।
ଯାର ନାହିଁ ଥାନ୍ତି କେ ସ୍ତ୍ରୀ ରଙ୍ଗେ
ସ୍ୱର୍ଗ ଅଳଙ୍କାର ସେ ସୁରପୁର ।
(ଏଠକ ଏଠକ) ଆମ୍ଭ ପ୍ରିୟ ସଖୀ ଉର୍ବଶୀ ଦେବୀ
କୁବେର ଭବନ ଫେରନ୍ତା ବେଳେ ।

# ନାଟ୍ୟୋଲ୍ଲିଖିତ ପାତ୍ରଗଣ ।

—*—

**ପୁରୁଷ ;—**

ପୁରୁରବା—ଚନ୍ଦ୍ରବଂଶୀୟ ରାଜା ।

ଆୟୁ—ଯୁବରାଜ ।

ଚିତ୍ରରଥ—ଗନ୍ଧର୍ବରାଜ ।

ଗାଳବ }
ପୈଲବ } —ଭରତ ମୁନିଙ୍କ ଶିଷ୍ୟଦ୍ୱୟ ।

ବିଦୂଷକ, ସାରଥି, କଞ୍ଚୁକୀ, କିରାତ, ନାରଦ ଏବଂ ପରିଜନଗଣ ।

**ସ୍ତ୍ରୀ ;—**

ଉର୍ବଶୀ—ଅପ୍ସରା, (ନାୟିକା)

ଚିତ୍ରଲେଖା—ଉର୍ବଶୀର ସଖୀ ।

କାଶୀରାଜ କନ୍ୟା—ରାଜମହିଷୀ ।

ନିପୁଣିକା—ରାଣୀଙ୍କର ଦାସୀ ।

ରମ୍ଭା, ମେନକା, ସହଜନ୍ୟା ପ୍ରଭୃତି ଅପ୍ସରାଗଣ, ତାପସୀ, ଯବନୀ, ନଟୀ ଏବଂ ପରିଜନଗଣ ।



# ବିକ୍ରମୋର୍ବଶୀ ।



## ପ୍ରଥମ ଅଙ୍କ ।

( ନାନ୍ଦୀ )

ନମୋ ଅନାଦି ପରମ ବ୍ରହ୍ମ ସନାତନ
ପରାତ୍ପର ବିଶ୍ୱକାରଣ ॥
ତୁମ୍ଭେ ମୂଳାଧାର ଜଗତର ପତି ତୁମ୍ଭେ ଜ୍ଞାନଜ୍ୟୋତି ଶକତି ସହିତ
ଅରୂପ ଅବ୍ୟୟ ପ୍ରଭୁ ହେ ଅଦ୍ୱୟ
ଭକ୍ତପ୍ରିୟ ଭୟ-ବାରଣ । ୧ ।
ତୁମ୍ଭେ ଯୋଗିଜନ ହୃଦପଦ୍ମରବି ତୁମ୍ଭେ ହିଁ ସୁନ୍ଦର ଅମର ସୁଛବି
ନିଖିଳ ଭୁବନ-ବ୍ୟାପୀ ହେ ମହାନ
ଦୟାମୟ ଦୁଃଖ ମୋଚନ । ୨ ।
ତୁମ୍ଭେ ମୁକ୍ତିଦାତା ପରମାତ୍ମା ହରି ଜନକ ଜନନୀ ତୁମ୍ଭେ ହେ ସବୁରି
ଅନ୍ତରେ ବାହାରେ ପୂରି ହେ ନିର୍ଭରେ
ରହିଅଛ ବିଶ୍ୱଜୀବନ । ୩ ।



ସୂତ୍ରଧାର—ଭଦ୍ର ମାରିଷ, ଏଠାକୁ ଟିକିଏ—

( ପାରିପାର୍ଶ୍ୱିକର ପ୍ରବେଶ । )

ପାରି—ଆର୍ଯ୍ୟ, ଆସିଲି । ବର୍ତ୍ତମାନ କଣ ଆଜ୍ଞା ହେଉଛି ।

ସୂତ୍ର—ଆଉ ଆଜ୍ଞା କଣ? ଏହି ଦର୍ଶକମାନେ ଅନେକ ନାଟକର ଅଭିନୟ କେତେଥର ଦେଖିଲେଣି । ତେବେ ଆଜି ଗୋଟିଏ ନୂତନ ନାଟକର ଅଭିନୟ କରିବା, ମୋ ବିଚାରରେ ଆଜି ମହାକବି କାଳିଦାସଙ୍କ ବିକ୍ରମୋର୍ବଶୀର ଅଭିନୟ ହେଲେ ଭଲ ହେବ ।

ତେବେ ତୁମେ ଯାଅ ତୁମସ୍ତ ପାତ୍ରମାନଙ୍କୁ ସାବଧାନ କରିଦେବ ଯେପରି ସେମାନେ ନିଜ ନିଜ ଭୂମିକାରେ, ଉତ୍ତମରୂପେ ପ୍ରସ୍ତୁତ ଥିବେ ।

ପାରି—ଅଜ୍ଞା, ସେହିପରି କରାଇବି । (ପ୍ରସ୍ଥାନୋଦ୍ୟତ)

ସୂତ୍ର—ସେହିପରି କଣ ଚାଲି ଯିବ ? ଗୋଟିଏ ଗୀତ ଶୁଣାଇବ ନାହିଁ । ଏ ନବ ବସନ୍ତରେ ସମସ୍ତେ ନବହର୍ଷ ଅନୁଭବ କରୁଛନ୍ତି । ଅତ-ଏବ ଏହି ସମୟକୁ ଚାହିଁ ଗୋଟିଏ ଗୀତ ଗାଅ ।

ପାରି—ସବୁଠାରେ ଏହି ବସନ୍ତ ଗୀତ ! ହଉ,—

ସଙ୍ଗୀତ ।

ଭୃଙ୍ଗ ଭୃଙ୍ଗ କୁଞ୍ଜେ ଏ ମଧୁ ଯାମିନୀ
ନବ ଚୂତପଲ୍ଲବଫୁଲ ମଞ୍ଜୁ ହାସିନୀ ।
ହସିଲଣି କାନ୍ତ ମାଧବୀ ସେବନ୍ତ,
ଏ ଯୂଥି କାମିନୀ ।
ବନେ ବନେ, ଏ ପବନେ,
ଚହଟିଲଣି ସୁବାସ ନଭ-ଅବନୀ । ୧ ।
ଦେଖ କି ଚଳ ଚଳ ଶୀତ ଚନ୍ଦନୀ
କେସନ ଅହା ବିଶ୍ୱଜନ ମନମୋହିନୀ ।
ସେ ସୁଧାର ସାର ପିଇ ଅନବାର,,
ମୁଗ୍ଧ ଧରଣୀ ।
କାହିଁଚାରି, ଏ ବସନ୍ତେ
ବନ୍ଧୁ ନାହିଁ ଘନ ଘନ ପ୍ରେମ ବାନ୍ଧିନୀ । ୨ ।

(ନେପଥ୍ୟ—ଗୀତସ୍ୱରେ)

କେ' ଅଛ । କେ' ଅଛ
ଦେବ ହୁତାଶ
ଜଳଇ ଜଳର
ଅମର ବନ୍ଧେ ।

ସୂତ୍ର—(ଶୁଣି) ଏ କଣ ? ଗୀତ ପଛେ ପଛେ ହୁରିରୁ କୁରଙ୍ଗୀ ସ୍ୱରପରି

କଣ ଶୁଭିଲା ? (ଚେଷ୍ଟା କରି) ହଁ ହଁ, ଏଥର ଜଣା ଗଲା—ନାରାୟଣ ମୁନଙ୍କ ପ୍ରିୟତମା କନ୍ୟା ଉର୍ବଶୀସୁନ୍ଦରୀ ବୋଧ ହୁଏ କୁବେର ପୁରରୁ ଫେରି ଆସୁଥିବା ବେଳେ ବାଟରେ କୌଣସି ରାକ୍ଷସ ହସ୍ତରେ ପଡ଼ିଛନ୍ତି । ସେଥି ପାଇଁ ବୋଧ ହୁଏ ଅପ୍ସରାମାନେ କାତର ହୋଇ ଏପରି ଆର୍ତ୍ତନାଦ କରୁଅଛନ୍ତି । ଯାଉ—(ପ୍ରସ୍ଥାନ)

---

ଦୃଶ୍ୟ—ଶୂନ୍ୟମାର୍ଗ-ହେମକୂଟ ପର୍ବତ ଶୃଙ୍ଗ ।

( ଶୂନ୍ୟମାର୍ଗରେ ଅପ୍ସରାମାନଙ୍କର ଆଗମନ ଏବଂ ଅବତରଣ । )

ଅପ୍ସ— କେ' ଅଛ କେ' ଅଛ

ଦେବ' ହିତକାରୀ,

ଉଦ୍ଧର ଉଦ୍ଧର

ଅମର ନାରୀ ।

(ରଥାରୋହୀ ରାଜା ପୁରୁରବାଙ୍କର ପ୍ରବେଶ ।)

ରାଜା—କିଛି ଭୟ ନାହିଁ-ଭୟ ନାହିଁ—ଆଉ ବ୍ୟାକୁଳ ହେବାର କାରଣ ନାହିଁ । ରାଜା ପୁରୁରବା ବର୍ତ୍ତମାନ ସୂର୍ଯ୍ୟପୂଜା ସାରି ଆପଣଙ୍କ ନିକଟରେ ଉପସ୍ଥିତ ! ଏବେ କାହାଁକୁ ଉଦ୍ଧାର କରିବାକୁ ହେବ-କହନ୍ତୁ ।

ଅପ୍ସ—ଏ ଅସୁରମାନଙ୍କ ହାତରୁ—

ରାଜା—କଣ ? ଅସୁରମାନଙ୍କର ପୁଣି ଆପଣମାନଙ୍କଠାରେ ଅତ୍ୟାଚାର ?

ଅପ୍ସ—ମହାରାଜ, ଶୁଣନ୍ତୁ ; (ଗୀତ ସ୍ୱରେ)

ଭକ୍ତପଦାର୍ଥୀର ତରଙ୍ଗ ସଙ୍ଗେ

ଦେବରାଜଙ୍କର କୋମଳଶର ।

ସବୁ ନାହିଁ ଆଜି କେ ଲୁଚି ରଙ୍ଗେ

ଶୃଙ୍ଗ ଅଳଙ୍କାର ଯେ ସହଚର ।

(ଏକ ଏକ) ଆମ୍ଭ ପ୍ରିୟ ସଖୀ ଉର୍ବଶୀ ବାଳୀ

କୁବେର ଭବନୁ ଫେରନ୍ତେ ବେଳେ ।

ହୁରଣ୍ ପୁର ବାସୀ ପାପୀ ଦୁର୍ମତି
ପଥେ କେଶୀଦୈତ୍ୟ ହରଇ ବଳେ ।
(ଏକତ୍ର) ଚନ୍ଦ୍ରରେଖା ଏଙ୍କା ଅଛ ସଙ୍ଗରେ
ସଙ୍କଟେ ପଡଲୁଁ ଅମ୍ଭେ ସକଳେ ।

ରାଜା—ଅଛା, ସେହି ପାପିଷ୍ଠ କେଉଁ ଦଗକୁ ଗଲା—ଜାଣନ୍ତି ?

ସହଜନ୍ୟା—ଏହି ଅଡକୁ ଗଲା ! (ଐଶାନକୋଣ ପ୍ରଦର୍ଶନ)

ରାଜା—ତାହା ହେଲେ ଆଉ ଦୁଃଖ କଣ ? ଏଥିର ନିଶ୍ଚିନ୍ତ ଥାନ୍ତୁ । ରାଜା ପୁରୂରବା ଏହିକ୍ଷଣି ଆପଣଙ୍କ ପ୍ରିୟସଖୀଙ୍କି ମୁକୁଳାଇ ଅଣିବେ ।

ରମ୍ଭା—ବୁଧଙ୍କ ପୁଅ ଚନ୍ଦ୍ରଙ୍କ ନାତି ନୋହିଲେ ଏପର ପୁଣି କିଏ କହନ୍ତା ?

ରାଜା—ହଁ, ଅପଣମାନେ କେଉଁଠାରେ ମୋତେ ଅପେକ୍ଷା କରଥିବେ ?

ଅପ୍ସ—ଏହି ହେମକୂଟ ପର୍ବତ ଉପରେ ।

ରାଜା—ସାରଥି, ଐଶାନ ଦଗକୁ ରଥ ଚଳାଅ ।

ସାର—ଯେ ଅଜ୍ଞା ( ତଥା କରଣ )

ରାଜା—(ରଥ ବେଗକୁ ଲକ୍ଷ୍ୟ କର ସ୍ୱଗତ)

ଏପର ବେଗେ ଯେବେ ଚଳେ ଆଜି ରଥ
କ୍ଷଣକେ ଚପିବ ଏହା ମହା ବେଗବନ୍ତ
ପକ୍ଷିରାଜ ଗରୁଡ଼ର ଗତି ; ଛାର ଦୈତ୍ୟ
ଦେବଦ୍ରୋହୀ ଯିବ କାହିଁ ଅବା, କି ଆଶ୍ଚର୍ଯ୍ୟ !
ରଥର ପ୍ରଖର ବେଗେ ବହି ପ୍ରଭଞ୍ଜନ
ରେଣୁସମ ଚୂର୍ଣ୍ଣ କରେ ଅଗ୍ରେ ମେଘମାଳ !
ଅରାଳ ଉହାଡ଼େ ଚକ୍ର ଅନ୍ୟ ଅରାବଳୀ
ଭ୍ରାନ୍ତକ ଜନ୍ମାଏ ; ଆହା ଚଦ ହେଲା ପର

ଦର୍ଶେ ଏହି ଗିରିମାଳା,    ଅଶ୍ୱିନୀରେ ପୂର୍ଣ୍ଣ
ଏ ଦୀର୍ଘ ଶୃଙ୍ଖଳ    ଯାଇଅଛି ମିଶି, ଅଉ
କେତୁଦଣ୍ଡେ ଏ କେତନ    ଉଡ଼ୁଛି ନିଶ୍ଚଳ ?

(ପ୍ରସ୍ଥାନ ।)

ରମ୍ଭା—ସଖି, ଆମ୍ଭର ଯେଉଁଠାକୁ କହିଥିଲେଇଁ ସେହିଠାକୁ ଯିବା ?

ଅନ୍ୟାନ୍ୟ ଅପ୍ସ—ହଉ ତେବେ, (ହେମକୂଟ ଆରୋହଣ ଏବଂ ଶୃଙ୍ଗରେ ଅବସ୍ଥାନ ।)

ରମ୍ଭା—ସତେ ସେ ରାଜର୍ଷି ଆମର ଏ ଦୁଃଖ ହରଣ କରିବେ ?

ମେନକା—ତୁମର ଅବିଶ୍ୱାସ ହେଉଛି ! ଏହି ଯୁଦ୍ଧଲାଗି ପରା ନିଜେ ଦେବରାଜ ତାହାଙ୍କୁ ମର୍ତ୍ତ୍ୟପୁରରୁ ଆଣାଇ ଯୋଗାପତ୍ତ କରିଛନ୍ତି ।

ରମ୍ଭା—ଏଥିରେ ତାଙ୍କର କେମନ୍ତ ଯଶ ରହୁ ।

ସହ—ଅଗୋ, ଏଥର ଥିର ହୁଅ—ଥିର ହୁଅ । ଦେଖିଲିଟି ତାଙ୍କ ହରେଣ-ଧ୍ୱଜା ଦିଶିଲାଣି । ନିଶ୍ଚେ ସେ ଆମ ମନକାମନା ପୂର୍ଣ୍ଣ କରି ଆସିଥିବେ ।

[ ନିମୀଳିତାକ୍ଷୀ ଭୀତା ଉର୍ବଶୀର ହସ୍ତ ଧରି ଚିତ୍ରଲେଖାର ପ୍ରବେଶ ।]

ଚିତ୍ର—ସଖି ! ଦମ୍ଭ ଧର-ଦମ୍ଭ ଧର ; ଏ କିଏ ?

ରାଜା—(ପ୍ରବେଶ କରି) ସୁନ୍ଦରି !

କି ଭୟ ଭାବନା ଆଉ, ଏବେ ଧୈର୍ଯ୍ୟ ଧର,
ଅକଳିତ ବିଦ୍ୱେଷ ମହିମା ଜଗତେ;
ତ୍ରିଭୁବନ ରକ୍ଷା ଯହିଁ କରନ୍ତି ନିତ୍ୟ
ଛାର ଦୈତ୍ୟ ଅବା କେତେ, ତେବେ ସୁନ୍ଦରି ଗୋ !
ଫୁଟାଅ ତବ ବିଶାଳ- ଲୋଚନ କମଳ
ପ୍ରତ୍ୟୂଷେ ପଦ୍ମିନୀ ଯଥା ପ୍ରକଟେ ପଦ୍ମକୁ—

ଚିତ୍ର—କାଣ କହିବେ ! ଏତେବେଳଯାଏ ତ କାହିଁ ଚେତା ହେଲା ନାହିଁ-
ଖାଲି ନାଆଁକୁ ଟିକିଏ ନିଶ୍ୱାସ ଯା'-ଆସ କରୁଛି ।

ରାଜା—ଚିତ୍ରଲେଖେ, ଭୟେ ମୋହ ଭଜିଛନ୍ତି ସଖୀ,
ଦେଖ କମ୍ପୁଅଛି ତାଙ୍କ କୁସୁମ କୋମଳ
ହୃଦମଣିମୟବେଦୀ, ସୂଚିଏ କଷେକଷେ
ଏମନ୍ଦାର ଫୁଲମାଳ, ବହଳ ଚନ୍ଦନ,
ବକ୍ଷୋଜ ସନ୍ଧିରେ ଦେଖ କେଡ଼େ ଉଲ୍ଲସିତ !

ଚିତ୍ର—ସହି ! ଥୟ ହୁଅ-ଅପ୍ସରା ହୋଇ ପୁଣି ଏ କି କଥା !
(ଉର୍ବଶୀର ସଂଜ୍ଞା ଲାଭ)

ରାଜା—ଚିତ୍ର ଲେଖେ, ଦେଖ ଦେଖ ପ୍ରିୟ ସଖୀ ତବ
ଧୀରେ ଧୀରେ ମୋହ ଗ୍ରାସୁଁ ଲଭିଲେଣି ମୁକ୍ତି
ଶଶାଙ୍କ ଉଦୟେଁ ଯଥା ତମିସ୍ରାରୁ ନିଶା,
ଅଥବା ବହଳ ଧୂମ୍ର ନାଶିଥିଏ ଅନଳ ;
ତଟ ପାତେ କଳୁଷିତ ମନ୍ଦାକିନୀ ବାରି
ପ୍ରସନ୍ନ ହୁଅଇ ଯେହ୍ନେ, ତେସନ ସୁନ୍ଦରୀ
ଭଜିଲେଣି ପ୍ରଫୁଲ୍ଲତା-ଅନନ୍ଦ ଦାୟିନୀ ।

ଚିତ୍ର—ସହି, ମିଛ ନୁହେଁ । ସେ ପାପିଷ୍ଠ-ଅସୁରକୁ ଯୁଦ୍ଧରେ ଜିଣିଛନ୍ତି ।

ଉର୍ବ—(ଅଖି ଫିଟାଇ) କିଏ ? ଦେବରାଜ !

ଚିତ୍ର—ନା-ନା, ସେ ନୁହନ୍ତି । ତାଙ୍କର ସମାନ ଏହି ମହାରାଜା—

ଉର୍ବ—(ରାଜାଙ୍କୁ ଦେଖି-ସ୍ୱଗତ) ଅସୁରମାନେ ମୋହର ବଡ଼ ଉପକାର
କରିଛନ୍ତି ।

ରାଜା—(ଉର୍ବଶୀଙ୍କ ପ୍ରତି ଦୃଷ୍ଟିପାତ କରି—ସ୍ୱଗତ)
ଆହା କି ସୁନ୍ଦର ମୂର୍ତ୍ତି, ବୃଷିଜନ ଘରେ

ପୁଣି ଏ ଲାବଣ୍ୟ ସୃଷ୍ଟି ? ଧନ୍ୟ ମହାମୁନି
ନାରାୟଣ, ଲଭିଛନ୍ତି ଏ ଦିବ୍ୟ ସମ୍ପଦ
ତନୟା ରୂପେ ଯେ ଭବେ, ଯାରୂପ ଦର୍ଶନେ
ମୁନିମନବିମୋହିନୀ ସ୍ୱର ସୁନ୍ଦରୀଏ
ମୁନିଙ୍କ ତପସ୍ୟା ଭଙ୍ଗ ଅସମ୍ଭବ ମଣି
ବାହୁଡ଼ିଲେ ଖିନ୍ନମନେ, ନିଜ ନିଜ ରୂପ
ଲଳିତ ଅନଙ୍ଗ କଳା ସକଳ ଧିକ୍କାରି !
ଯଥାର୍ଥରେ ନୁହନ୍ତି ଏ ତାପସ ତନୁଜା,
ଅସମ୍ଭବ ଏ ଜନମ ଋଷିର କୁଟୀରେ,
ନୁହଇ ଏ ପ୍ରଜାପତି ବ୍ରହ୍ମାଙ୍କର ସୃଷ୍ଟି,
ମୋତେ ଲାଗେ ଏକଲାରେ ସ୍ୱୟଂ କଳାନିଧି,
କୁସୁମ କୋଦଣ୍ଡ ଧରି ରସଜ୍ଞ ମଦନ
ଅବା ରମ୍ୟ ଋତୁରାଜ ସୁରଭି ବସନ୍ତ
କରିଛନ୍ତି ବହୁଶ୍ରମ; ନୋହିଲେ ବା କାହିଁ
ଗ୍ରନ୍ଥକୀଟ ମୁନି ଏହା କରନ୍ତେ ନିର୍ମାଣ ?
ସଦା ବେଦ ପାଠେ ଜଡ଼ ଯାହାଙ୍କର ମତି !

ଉର୍ବ—ଚିତ୍ର, ଅମ ସଖୀମାନେ କିଣ କରୁଥିବେ ?

ଚିତ୍ର—ମହାରାଜାଙ୍କୁ ପଚାର—ସେହି ଜାଣନ୍ତି

ରାଜା—( ଉର୍ବଶୀଙ୍କି ଚାହିଁ ) ସେମାନେ ନିଶ୍ଚୟ ବଡ଼ ଦୁଃଖରେ ଥିବେ । ମୁହୂର୍ତ୍ତିକ ଦେଖାରେ ତ ଅମ୍ଭର ପାଖ ଛାଡ଼ ଯିବାକୁ ଇଚ୍ଛା ହେଉ ନାହିଁ । ସେହି ଚିର ସଙ୍ଗିନୀମାନେ ବା କିପରି ଏତେକାଳ ନ ଦେଖି ନିଶ୍ଚିନ୍ତ ହୋଇ ରହି ପାରିବେ ?

ଉର୍ବ—( ସଲଜ୍ଜ ଭାବରେ—ସ୍ୱଗତ ) ଆହା, ଯାଙ୍କର କେଡ଼େ ମଧୁର କଥା ! ଚନ୍ଦ୍ରମା ଦେହରୁ ଅମୃତ ଝରିବା ବା ଆଚମ୍ବିତ କଣ ?

ରାଜା—( ହସ୍ତ ସଙ୍କେତରେ)

ହେମଗୌର, ଦେଖ ଏଣୁ ହେମକୂଟ ଶିରେ
ପିଅନ୍ତି ସଖୀଏ ତବ ଶ୍ରୀମୁଖ ଚନ୍ଦ୍ରମା
ଅନମେଷ ନେତ୍ରେ, ଯଥା ବନ୍ଧୁ କଲ୍ଲୋଳକୁ
ମୁକତ ଶଶୀକି ହର୍ଷେ ନିରେଖନ୍ତି ଜନେ ।

ଚିତ୍ର—ସହି ! ଗ୍ରହଁ-ଗ୍ରହଁ ।

ଉର୍ବ—(ରାଜାଙ୍କୁ ସାନୁରାଗରେ ଚାହିଁ) ମୋହର ଅଛି କାଣ ଏ ଦୁଃଖୀ? ଖାଲି ମୋତେ ଗ୍ରହଁ ରହିଛନ୍ତି ।

ଚିତ୍ର—ହଇ ହେ, କିଏ?

ଉର୍ବ—ସଖୀମାନେ—

ରମ୍ଭା—(ସହର୍ଷେ) ଅହେ, ହେଇଟିକି ଚବ ଉର୍ବଶୀଙ୍କି ଘେନି ବିଶାଖା ଚନ୍ଦ୍ରପୁର ମହାରାଜା ଆସି ଗଲେଣି ।

ମେନ—(ନିରୀକ୍ଷଣ କରି) ଦୁଇ ଅଟେ ଅମୃତ ଭଳି ହୋଇଛି । ଏଣେ ଅମର ସଖୀ ଉଦ୍ଧାର ପାଇଲେ—ଆଉ ମହାରାଜା ଯୁଦ୍ଧରେ ନିଖୁଣ ହୋଇ ଫେରି ଅସିଛନ୍ତି ।

ସହ—ସତ କହିଲ, ଅସୁରଙ୍କୁ ଜିଣିବା କଣ ସହଜ ପଡ଼ିଛି?

ରାଜା—ସାରଥି ! ସେହି ପର୍ବତ ନିକଟ ହେଲା, ଏଥର ରଥ ଅବତାରଣ କର ।

ସାର—ଯେ ଆଜ୍ଞା, ମହାରାଜ (ତଥା କରଣ)

ରାଜା—(ରଥୋଦ୍ଘାତ ଅନୁଭବ କରି—ସ୍ୱଗତ)
ଆହା କି ସ୍ୱର୍ଗ ସମ୍ପଦ ଲଭିଲି ମୁଁ ଆଜି
ଏ ଶିଳା ବନ୍ଧୁର ପଥେ, ରଥଘାତ ବଶୁଁ
ସୁନ୍ଦରୀର ସୁକୁମାର ବାହୁରେ ମୋ ବାହୁ
ଜଡ଼ିଲା ସୁକୃତ ଫଳେ; ଅଙ୍କୁରିଲା ଏବେ
ରୋମାଞ୍ଚ ସଙ୍ଗତେ ମୋର କାମନା ବିକାର ।

ଉର୍ବ—(ସଲଜ୍ଜ ଭାବରେ) ଚବ, ଟିକିଏ ଘୁଞ୍ଚି ବସିବନ୍ତୁ ।

ଚିତ୍ର—(ସଖୀଙ୍କ ପ୍ରତି) ମୁଁ—ଧୂମ୍ର ଧାରେଁ କାହିଁ ।

ରମ୍ଭା—ଆସ, ସମସ୍ତେ ଯାଇ ମହାରାଜାଙ୍କୁ ସାକ୍ଷାତ ଅଣିବା (ଅବତରଣ ପୂର୍ବକ ସମୀପକୁ ଗମନ)

ରାଜା—ସାରଥି, ଏହିଠାରେ ରଥ ରଖ । ତାଙ୍କ ସଖୀମାନେ ସବୁ ଦେଖିବାକୁ ଉତ୍ସୁକ ହେଉଛନ୍ତି । ପ୍ରିୟ ସଖୀ ଏଥର ରଥରୁ ଅବତରଣ କରି ଏହି ସୁର ସୁନ୍ଦରୀମାନଙ୍କ ଆଲିଙ୍ଗନ ସୁଖ କରନ୍ତୁ । (ସାରଥି ସେହିପରି କରନ୍ତେ ।)

ସମସ୍ତେ—ଅମ୍ଭର ବଡ଼ଭାଗ୍ୟ, ମହାରାଜାଙ୍କର ଜୟ ହେଲା ।

ରାଜା—ଆପଣମାନଙ୍କର ମଧ୍ୟ ପ୍ରିୟ ସଖୀ ମିଳନ—

ଉର୍ବ—(ଚିତ୍ରଲେଖା ହାତଧରି ରଥରୁ ଓହ୍ଲାଇ) ଅସ, ସମସ୍ତେ ମତେ ଥରେ ମନ ଇଚ୍ଛାରେ ଆଲିଙ୍ଗନ କର । ମୋର ଆଉ ତୁମ୍ଭଙ୍କୁ ଦେଖିବି ବୋଲି ଆଶା ନ ଥିଲା । (ସମସ୍ତଙ୍କର ଆଲିଙ୍ଗନ ।)

ରମ୍ଭା—ମହାରାଜାଙ୍କର ସୁକୃତ ବଢ଼ୁ ।

ସାର—ମହାରାଜ, ପୂର୍ବ ଦିଗରୁ ଭାରି ବେଗରେ ରଥ ଆସୁଥିଲା ପରି ଜଣା ଶୁଭୁଛି । ହେଇ ଦେଖନ୍ତୁ, ଜଣେ କିଏ ମେଘ ଖଣ୍ଡେ ଖସି ପଡ଼ିଲା ପରି ଏହି ପର୍ବତ ଶିଖରକୁ ମାଡ଼ି ଆସୁଛନ୍ତି । ତାଙ୍କ ହାତରେ ସୁନାର କଙ୍କଣ ବିଜୁଳି ପରି ଝଟକୁଛି ।

(ଅପ୍ସରାମାନଙ୍କର ଅବଲୋକନ ।)

ଅପ୍ସ—ହେହୋ, ନିଜେ ଗନ୍ଧର୍ବ ରାଜ ଚିତ୍ରରଥ ବିଜେ କରୁଛନ୍ତି !

[ଶୂନ୍ୟମାର୍ଗରେ ଆସି ଚିତ୍ରରଥର ପ୍ରବେଶ ।]

ଚିତ୍ର—ଦେବରାଜଙ୍କ ଏହି ହିତକର କାର୍ଯ୍ୟରେ ଅପଣ ଯଥେଷ୍ଟ ବିକ୍ରମର ପରିଚୟ ଦେଇଅଛନ୍ତି ।

ରାଜା—ବାଃ ! ଗନ୍ଧର୍ବରାଜ ଯେ ! [ରଥରୁ ଓହ୍ଲାଇ] ଶୁଭାଗମନ କରନ୍ତୁ—[ପରସ୍ପରର କର ମର୍ଦ୍ଦନ ।]

ଚୀ—ବୟସ୍ୟ, ଦେବର୍ଷି ନାରଦଙ୍କ ମୁଖରୁ ଉର୍ବଶୀ ହରଣ ସମ୍ବାଦ ପାଇ ଦେବରାଜ ଗନ୍ଧର୍ବସେନା ପ୍ରେରଣ କରିଥିଲେ । ତାହା ପରେ ଆମ୍ଭେମାନେ ବାଟରେ ଚାରଣଙ୍କ ମୁଖରୁ ଶୁଣିଲୁଁ ଯେ, ଆପଣ ବିଜୟ ଲାଭ କରିଅଛନ୍ତି ; ତେଣୁ ଏହିଠାରେ ଆସି ଦେଖିଲୁଁ । ବର୍ତ୍ତମାନ ଆପଣ ଏହାଙ୍କୁ ନେଇ ଦେବରାଜଙ୍କ ନିକଟକୁ ଚଳେ କରନ୍ତୁ । ଆପଣ ତାହାଙ୍କର ବଡ଼ ଉପକାର କରିଛନ୍ତି ! ପୂର୍ବେ ନାରାୟଣ ମୁନି ଏହାଙ୍କୁ ମହେନ୍ଦ୍ରଙ୍କ ହସ୍ତରେ ସମର୍ପଣ କରିଥିଲେ, ତତ୍ପରେ ଦୈତ୍ୟ ହରଣ କରି ନେଲା । ବର୍ତ୍ତମାନ ପୁଣି ଆପଣ ତାଙ୍କୁ ଘୋର ବିପଦରୁ ଉଦ୍ଧାର କରି ଦେବରାଜଙ୍କର ପରମ ବନ୍ଧୁ ହେଲେ ।

ରାଜା—ନା-ନା, ଏହା ଯଥାର୍ଥ ନୁହେ । ଏହି ବିଜୟ ବା ବିକ୍ରମ ସବୁ ସେହି ବଜ୍ରପାଣିଙ୍କର—ତାଙ୍କର ପକ୍ଷରେ ଥିଲେ ଜୟ ହୁଏ । ପଶୁରାଜ ଗୁହା ଭିତରେ ଥିଲେସୁଦ୍ଧା ତାହାର ଗର୍ଜ୍ଜନ ଦୁରନ୍ତ ପଶୁମାନଙ୍କର ହୃଦକୁ ଭେଦ କରି ପକାଏ ।

ଚୀ—ତାହା ସତ୍ୟ, ମାତ୍ର ଏପରି ବିନୟ ମହା ବିକ୍ରମର ଭୂଷଣ ।

ରାଜା—ଗନ୍ଧର୍ବ ପତି, ମୋହର ଅଭି ଦେବରାଜଙ୍କ ନିକଟକୁ ଯିବାକୁ ଅବସର ନାହିଁ । ଆପଣ ଏହାଙ୍କୁ ନେଇ ଯାନ୍ତୁ ।

ଚୀ—ଯେପରି ଆପଣଙ୍କ ଇଚ୍ଛା । ତାହାହେଲେ ସମସ୍ତେ ଆସ, ଏଣେ ଏଣେ [ଅପ୍ସରାମାନଙ୍କର ପ୍ରସ୍ଥାନ]

ଉର୍ବ—[ଜନାନ୍ତିକେ ।] ସଖି, ଏତେ ଉପକାରରେ ମହାରାଜାଙ୍କୁ ଯା ଥରେ କିଛି କହି ପାରିଲୁ ନାହିଁ । ତୁମେ ହେଲେ ମୋହର ମୁଖ ହୁଅ ।

ଚୀ—[ରାଜାଙ୍କ ନିକଟକୁ ଯାଇ] ମହାରାଜ, ଉର୍ବଶୀ ସୁନ୍ଦରୀଙ୍କର ମନ ହେଉଚି ଯେ ଅନୁମତି ହେଲେ ମହାରାଜାଙ୍କ କୀର୍ତ୍ତିକି ସାଥିରେ ନେଇ ଦେବପୁରକୁ ଚାଲି ଯିବେ ।

ରାଜା—ଅଛ, ତେବେ ମୁଁ ଚଳିଲି । ପୁଣି ସମୟରେ ଦେଖା ହେବ ।
[ଗନ୍ଧର୍ବଗଣ ସହିତ ସମସ୍ତଙ୍କର ଆକାଶୋତ୍‌ଥାନର ଅଭିନୟ ।]

ଉର୍ବ—[ ଉତ୍‌ଥାନ ଭଙ୍ଗ ଅନୁଭବ କରି ] ଅଗୋ, ଏ ଲତା ଭିତରେ
କେଉଁଠି ମୋ ହାରୁଟା ଲାଗିଗଲା ! [ ମୁଖ ଫେରାଇ ] ଚିତ୍ର,
ମୋତେ ଟିକିଏ ଛଡ଼େଇ ଦବଟି ।

ଚିତ୍ର—[ ସସ୍ମିତେ ] ବଡ଼ ଅଡୁଆ ହୋଇଚି । ସହଜରେ ଛାଡ଼ ପାଇଲା
ପରି ଲାଗୁନାହିଁ । ତେବେକେ ମୁଁ ଛାଡ଼ିବ ନାହିଁ ।

ଉର୍ବ—ଏଇ କଥାଟି ଏକା ତୁମ ମନରେ ରଖି ଥିବ ।

ଚିତ୍ର—[ମୋଚନାଭିନୟ]

ରାଜା—[ ସ୍ୱଗତ ] ସୁକୁମାର ଲତେ ; ମୋର ବଡ଼ ହିତ କଲୁ,
ପଥେ, ସୁର ସୁନ୍ଦରୀର ସ୍ୱରଗ ପ୍ରୟାଣେ
କ୍ଷଣେ ବାଧା ଜନମାଇ, ତୋହ ଯୋଗୁଁ ପ୍ରିୟା
ଅପ୍ସରାମଣିର ଏହି ବଙ୍କିମ ଗ୍ରୀବାଣୀ,
ସଲଜ୍ଜ ବଦନ ଅଜ ହେଲା ନେତ୍ରାତିଥି !

ସାର—ମହାରାଜ,

ଦେଖ ଦେଖ ଏହି ତବ ବାୟବ୍ୟ ବିଶିଖ,
ମଘବାର ଦୈତ୍ୟବରେ ଲବଣ ବାରିଧି—
ଉଦରେ ଭରଣ କରେ ଅସିଲାଣି ଫେରି
ପୁଣି ଏ ଲମ୍ବ ତୂଣୀକୁ, ଫଣୀ ଯେଉଁ ଭଳି
ସ୍ୱନ ସହ ପ୍ରବେଶଇ ଗଭୀର ବିବରେ ।

ରାଜା—ରଥ ସଜ୍ଜ କର ତେବେ, କରିବି ଆରୋହଣ ।

ଉର୍ବ—[ସସ୍ପୃହରେ ଚାହିଁ, ସ୍ୱଗତ] ସତେ, ଆଉ ଥରେ ମୁହିଁ ଦେଖିବ !
[ସାରଥିଙ୍କ ରଥସଜ୍ଜା, ରଥାରୋହଣ, ସଖୀଗଣ ସହ ଦୀର୍ଘନିଃଶ୍ୱାସ
ତ୍ୟାଗପୂର୍ବକ ଉର୍ବଶୀ ଓ ଚିତ୍ରରଥର ପ୍ରସ୍ଥାନ]

ରାଜା—ଅହୋ ! କେଡ଼େ ଦୁଃସାହସ, ଦୁର୍ଦ୍ଧର୍ଷମଦନ ।
ଦୁର୍ଲଭ ପଦାର୍ଥେ ଅଜି କରେ ପ୍ରାପ୍ତି ଅଶା !
[ ଉର୍ବଶୀର ଗମନମାର୍ଗକୁ ଲକ୍ଷ୍ୟ କରି ]
ଶରୀରୁ ମନକୁ ମୋର ଏ ସୁର ସୁନ୍ଦରୀ
ଅଲକ୍ଷିତେ ଝାଙ୍କି ନେଏ ବହାଯୃସପଥେ,
ଖଣ୍ଡିତ ମୃଣାଳ ଖଣ୍ଡୁ, ରାଜହଂସୀ ଯଥା
ଝାଙ୍କି ନଏ କଉଶଲେ ସୂକ୍ଷ୍ମ ବିସତନ୍ତୁ ।
[ପ୍ରସ୍ଥାନ ।]



## ଦ୍ୱିତୀୟ ଅଙ୍କ ।

ଦୃଶ୍ୟ—ରାଜପ୍ରାସାଦସମ୍ମୁଖ ଛାଜଠେ ।

( ବିଦୂଷକର ପ୍ରବେଶ । )

ବିଦୂ—ହୋଃ ହୋଃ ହୋ ହୋ-ହା (ହାସ୍ୟ) ନିମନ୍ତ୍ରଣିଆ ବ୍ରାହ୍ମଣ କେଉଁଠି ଦହଡ, ଦହଡ, ଭାତ ପାଟି ଭିତରେ ଜାକ କରି ରଖି ପାରିଲାଣି । ମୁଁ ବା କେତେକେ ରଖିବି ! ଆଜି ଆଉ ମହାରାଜାଙ୍କ ଗୁପ୍ତକଥାଟି ଏ ଜିଭ ଅଗରେ ରଖି ପାରୁ ନାହିଁ । ଯେମିତ ଠକ୍ ଠକ ହୋଇ ଫୁଟି ପଡୁଛି । (ହାସ୍ୟପୂର୍ବକ) ତେବେ ଯାଉଛି ଯେତେ-ବେଳେତକ ରାଜାଠାକୁର ଗାଦୀରୁ ଉଠି ନାହାନ୍ତି ତେତେ ବେଳେଯାଏ ଯାଇ ଏ ବଡ କୋଠା ପାଖରେ ଟିକିଏ ଅଟକି ନିଏଁ । (ପରିକ୍ରମଣ ପୂର୍ବକ ଅବସ୍ଥାନ)

[ଚେଟୀର ପ୍ରବେଶ]

ଚେଟୀ—(ସ୍ୱଗତ) "ମତେ ଅଜି ପାଟ ମହାଦେଈ ନିଜେ ଡାକି କରି କହିଲେ 'ଅଲୋ ନିପୁଣିକା, ଯେଉଁ ଦିନଠଉଁ ସେ ସୂର୍ଯ୍ୟ ପୂଜା ସାରି ପୁରକୁ ଅସିଲେଣି, ସେହି ଦିନଠାରୁ ତାଙ୍କ ମନ କମିତ

ଫିଙ୍ଗା ପଡ଼ୁଛ । ତୁ ଯା—ତାଙ୍କ ପାଇଁ ସେ ଗୋସେଇଁଙ୍କଠାରୁ ବୁଝି ଅସିବୁ ଏଥିର କଥା କଣ ? ମୁଁ ଏବେ ସେ ଗୋସାଇଁଙ୍କ କେମିତି ପାଉଛ ! ଆଉ ସେ ଗୁପ୍ତ କଥା ବା କେତେ ଦିନ ଛପି ରହିବ । ଦିହୁନାଡ ଭିତରେ କାହାର କେଉଁଠି ବେଶି ଦିନ ରହିଲାଣି ? ଯାଉଚି ତାଙ୍କୁ ଅଗ ଖୋଜିବ । ମଲା, ଗୋସାଇଁତ ଏହିଠାଇଁ ଭୁମହୋଇ ମାଙ୍କଉଣ୍ଟିପର ଠିଅହୋଇଛନ୍ତି । ଦେବେପାଖକୁ ଯାଉଚ—ଗୋସେଇଁ, ଓଲକ ।

ଦ୍ୱିଜ—ମଙ୍ଗଳ ହେଉ, (ସ୍ୱଗତ) ଏ ପୋଇଲ ଠୋକଠାକୁ ଦେଖି କରି ଏବେ ସେ କଥା ପେଟ ଫୁଟେଇ ବାହାର ପଡ଼ୁଛୁ (ପ୍ରକାଶ୍ୟେ) କଲେ, ନପୁଣିକା ତୁ ଅଜି ଗାନବାଜଣା ଘଡ଼ ଲୁଅଡେ ଅସିଲୁ ।

ନପୁ—ଗୋସେଇଁଙ୍କ ଦେଖିବା ପାଇଁ ପାଟମହାଦେଈଙ୍କର ଅଜ୍ଞା ;

ବଦୂ—ରାଣୀ ଠାକୁରାଣୀ କଣ ହୁକୁମ କରଛନ୍ତି ?

ନପୁ—କହିଚନ୍ତି-ଗୋସେଇଁ ସବୁବେଳେ ମୋ ପକ୍ଷରେ ଥାନ୍ତି, ମୋ ମନରେ କଛୁ ଦୁଖ ହେବାର ଜାଣିଲେ ଯେ କେଉଁ ଅବହେଳା କରିବେ ନାହିଁ ।

ବଦୂ—(ସତର୍କେ) ଗୋସେଇଁ କଣ କେବେ ତାଙ୍କୁ ପ୍ରତିକୂଳ ହୋଇଛନ୍ତି ?

ନପୁ—ଗୋସେଇଁ ? ଯାହାଲାଗି ମହାରାଜାଙ୍କ ମନ ଚଞ୍ଚଳ ହୋଇଚ ଯୁମୁଁ ନଜେ ସେ ସୁନ୍ଦରୀ ନାଁ—ମହାଦେଈଙ୍କ ଅଗରେ କହିଚନ୍ତି ।

ବଦୂ—(ସ୍ୱଗତ) ସେ ନଜେ କେମିତ ଏ କଥା କହିଲେ ? ମୁଁ ତେବେ କାହିଁକି ଅକାରଣେ ଜିଭଟାକୁ ବନ୍ଦ କରି ଏତେ କଷ୍ଟ ପାଉଛି । (ପ୍ରକାଶ୍ୟେ) କଣ କହଛନ୍ତି ଉର୍ବଶୀ ବୋଲିକି ? ତାଙ୍କୁ ଦେଖିଲା ଦିନଠାରୁ ରାଜା ଭୋଳ ହୋଇଗଲେଣି । ବେଳେବେଳେ ଦରା ମତେ ଉର୍ବଶୀ କରିର ଜାକ ପକାଉଛନ୍ତି ।

ନପୁ—(ସ୍ୱଗତ) ଲାଗି ଲାଗି ଆଜି ପରକା ଗୁପ୍ତକଥାଁ ବାହାର କଲା । (ପ୍ରକାଶ୍ୟ) ଗୋସେଇଁ, ରାଣୀଙ୍କି କଣ କହିବ ।

ବହୂ—ତେବେ ନପୁଣିକା, ତୁ ତାଙ୍କୁ ଏହି କଥା କହିବୁ ଯେ, ମୁଁ ଆଗେ ରାଜାଙ୍କ ମନକୁ ଏଥିରୁ ଫେରାଏଁ। ପଛେ ଯାଇଁ ରାଣୀଙ୍କି ମୁହଁ ଦେଖାଇବ ।

ନପୁ—ହଉ, (ପ୍ରସ୍ଥାନ ।)

ନେପଥ୍ୟେ—ବୈତାଳିକ ସଙ୍ଗୀତ ।

ରାଗ ଆଶାବରୀ ।

ଜୟ ରାଜନ ହେ ଭୁବନ ତବ ଗରିମା
ସ୍ୱରଗ ମରତ୍ୟ ପାତାଳରେ ପ୍ରଭୁ
ବଦତ ତବ ମହିମା । ପଦ ।
ନଭେ ତାରାଗଣ— ମଧ୍ୟରେ ଯେସନ
ପୂର୍ଣ୍ଣିମାରେ ପୂର୍ଣ୍ଣଶଶୀ । ୦
ତେସନ ଏ ଜନ— ସମାଜେ ନୃମଣି
ରାଜୁଅଛ ଦିବାନିଶି । ୧ ।
ତବ ପୁଣ୍ୟବଳେ ପ୍ରଜାଙ୍କର ମେଳେ
ପାପ ତାପ ଦୁଃଖରାଶି ।
ଶ୍ରୀମୁଖ ପଙ୍କଜ— ଦରଶନ ମାତ୍ରେ
ଯାଉଅଛି କେଣେ ଭାସି । ୨ ।
ରାଜକର୍ମେ ଚିତ୍ତ ଦେଉଛ ସତତ
କ୍ଷଣତ ମାତ୍ର ବିରତ ।
ମଧ୍ୟ ଦିବସରେ ଦିବାକର ଯଥା
ନଭେଁ କରେଁ କ୍ଷଣେ ସ୍ଥିତ । ୩ ।

ବହୂ—(କାନଦେଇ) ଓହୋ ! ରାଜା ଏହିକ୍ଷଣି ଆସନରୁ ଉଠିଲେ । ଏହି ଆଡକୁ ଆସୁଛନ୍ତି ପରା ! ତେବେ ଯାଉଛି ତାଙ୍କ ପିଛା ଧରିବ ! (ପ୍ରସ୍ଥାନ)

ଦୃଶ୍ୟ—ରାଜପ୍ରାସାଦ ।

(ଉତ୍କଣ୍ଠିତ ରାଜା ଓ ବିଦୂଷକର ପ୍ରବେଶ)

ରାଜା—ଯେଉଁ ଦିନୁ ସେ ସୁନ୍ଦରୀ ମୋ ନୟନ ପଥେ
ପଡ଼ିଅଛି ଭାଗ୍ୟବଶେ, ସେହିଦିନୁ ସଖୀ
ବିଶ୍ୱଜୟୀ ମନ୍ମଥର ସମ୍ମୋହନ ବାଣେ
ଫିଟାଇଛି ବାଟ ମୋର ହୃଦସନ୍ଧି ଯାଏ ;
ନେଇଛି କୌଶଳେ କାଢି ଏ ଦେହ ପିଞ୍ଜରୁ
ମାନସ ପକ୍ଷୀକି ମୋର,—ଅଛି ଶୂନ୍ୟ ଦେହେ ! !

ବିଦୂ—(ସ୍ୱଗତ) ତେବେତ କାଶୀ ରାଜଜେମା ବଡ଼ କଷ୍ଟ ପାଉଥିବେ ! !

ରାଜା—ମୋ କଥାଁ ଗୋପନ କରି ରଖିଛତ ?

ବିଦୂ—(ବିଷଣ୍ଣଭାବରେ—ସ୍ୱଗତ) ଅଃ, ଛି ଛି—ଦାସୀଟାଏ ମୋତେ ଏବେ ଠକି ଦେଇ ଗୁଳିଗଲା ? ନହିଲେ ଏ ପୁଣି କାହିଁକି ମୋତେ ଏପରି ପଚାରନ୍ତେ ?

ରାଜା—(ଅଶଙ୍କା କରି) ତୁନି ହୋଇ ରହିଲ ଯେ ?

ବିଦୂ—ମୁଁ ଜିଭକୁ ଏମିତ ଜାପି କରି ରଖିଛି ଯେ ଅପଣଙ୍କୁ ସୁଦ୍ଧା ଚଞ୍ଚଳ କରି ଉତ୍ତର ଦେଇ ପାରୁ ନାହିଁ ।

ରାଜା—ଠିକ୍, ଅଚ୍ଛା ସେ ଥାଉ, ବର୍ତ୍ତମାନ କଣ ଆମୋଦ କରିବା ?

ବିଦୂ—ତେବେ ରୋଷଘରକୁ ବିଜେ କରନ୍ତୁ ।

ରାଜା—ସେଠାକୁ ଯାଇ କଣ କରିବା ?

ବିଦୂ—ସେଠାରେ ଭୋଜ୍ୟ, ଚର୍ବ୍ୟ, ଚୂଷ୍ୟ, ଲେହ୍ୟ, ପେୟ ଏହି ପାଞ୍ଚ ପ୍ରକାର ଆହାର ଯୋଗାଡ଼ କରି ଏହି ପଞ୍ଚଭୂତ ଅମ୍ଭାକୁ ପରିତୋଷ କରାଇବା ।

ରାଜା—(ସସ୍ମିତେ) ତୁମ୍ଭେ ସିନା ଯାହା ଖୋଜୁଛ ସେ ସବୁ ସେଠାରେ

ଅସ୍ତୁ-ତେବେ ପ୍ରମୋଦ କରିବ ମୁଁ ଯାଇ କିଣ କରିବି ! ମୁଁ ତ ଯାହା ଖୋଜୁଛି ତାହା ଦୁର୍ଲଭ ।

ବଦୂ—ଓହୋ, ଅପଣ, ଉର୍ବଶୀଙ୍କ ଅଖିରେ ପଡ଼ିଛନ୍ତି ପରା ?

ରାଜା—କଣ ହେଲା ସେଥିରୁ ?

ବଦୂ—ସେ ତ ଦୁର୍ଲଭ ହେଲା ପରି ଲାଗୁ ନାହିଁ ।

ରାଜା—ମୋହ ସଙ୍ଗରେ ବସା ଉଠା କରୁଥିବାରୁ ଏପରି କହୁଦେଲ ସିନା ?

ବଦୂ—ଏହା କହି ମୋହର ଅଗ୍ରହଟା ଅଧିକ୍ ବଢାଇ ଦେଲେ । ଆଚ୍ଛା ପଚାରୁଛି ; ଉର୍ବଶୀ କଣ ରୂପରେ ଅବିକଳ ମୋହର ପରି ?

ରାଜା—ତାହାଙ୍କର କୌଣସି ଅଙ୍ଗର ବର୍ଣ୍ଣନା କରି ହେବ ନାହିଁ, ତେବେ ସ୍ଥୂଳରେ ଏତିକି କୁହାଯାଇ ପାରେ ଯେ—

ବଦୂ—କହି ଯାନ୍ତୁ-କାନ ଡେରିଛି ।

ରାଜା—ତାହାଙ୍କର ଅବୟବ ଅଲଙ୍କାରର ଅଲଙ୍କାର-ଉପମାର ପ୍ରତ୍ୟୁପମା-ବେଶଭୂଷାର ଭୂଷଣ ।

ବଦୂ—ତେଣୁ ପରା ଆପଣ ଦିବ୍ୟ ରସ ପାଇବା ଆଶାରେ ଚାତକବ୍ରତ କରିଛନ୍ତି ?

ରାଜା—ନିର୍ଜନସ୍ଥାନ ଭିନ୍ନ ଉତ୍କଣ୍ଠିତ ବ୍ୟକ୍ତିର ଅନ୍ୟ ଆଶ୍ରୟ ନାହିଁ । ତାହାହେଲେ ତୁମେ ପ୍ରମୋଦ ବନକୁ ବାଟ ଦେଖାଅ ।

ବଦୂ—ହଉ, ଅଉ ଗତି କଣ ? (ପ୍ରକାଶ୍ୟେ) ଏବାଟେ ଏବାଟେ । (ପରିକ୍ରମଣ କରି) ହେଇ ଦେଖନ୍ତୁ, ପ୍ରମୋଦ ବନର ରସିକ ପବନ ଅପଣଙ୍କୁ ଯାଗେଇ ନେବାକୁ ଅସିଅଛି ।

ରାଜା—(ଦେଖିକରି) ବିଶେଷଣଟା ଯଥାର୍ଥ ହୋଇଛି । ଏହି ବାୟୁ ଏଣେ ମାଧବୀକୁ ସିଞ୍ଚନ କରୁଅଛି, ତେଣେ କୁନ୍ଦଲତାକୁ ନଚାଉଅଛି, ସେଥିରେ ପୁଣି ଦାକ୍ଷିଣ୍ୟ ମିଶିଅଛି । ଯଥାର୍ଥରେ ଏହାର ରସିକତା ବେଶ୍ ପ୍ରକାଶ ପାଉଛି ।

ବିଦୂ—ଆପଣଙ୍କର ମଧ୍ୟ ସେହିପରି ଭାବ ହେଉ (ପରିକ୍ରମଣ କରି)
ପ୍ରମୋଦ ବନର ବାଟ ଏହି, ଭିତରକୁ ଚାଲନ୍ତୁ ।

ରାଜା—ତୁମ୍ଭେ ଆଗରେ ଚାଲ (ଉଭୟଙ୍କର ପ୍ରବେଶ)
ବୟସ୍ୟ, ଏଠାକୁ ଆସି ଭଲ ହେଲା ନାହିଁ । ସ୍ତ୍ରୋତର ପ୍ରତିଲୋମରେ ସନ୍ତରଣ ପରି ମୋହର ଉଦ୍ୟାନପ୍ରବେଶ ଅଧିକ କଷ୍ଟକର ହେଲା । ଏଥିରେ ଶାନ୍ତି ଲାଭ ହେବା ଦୂରେ ଥାଉ, ବରଂ ଅଶାନ୍ତି ବୃଦ୍ଧି ପାଇବ ।

ବିଦୂ—କେମିତି !

ରାଜା—ଅସୁଲଭ ପଦାର୍ଥରେ ବାସନା ମୋହର,
ଜାଣିଛତ ସଖେ ଏହା, ଏବେ ପଞ୍ଚବାଣ
ଦିନୁ ଦିନ କରେ କ୍ଷୀଣ ତନୁକୁ ମୋହର,
କେମନ୍ତେ ସହିବ କହ ଅନଳ-ସରଣୀ
ଏ ମଧୁ ମଳୟାନିଳ ; ନବ ବିକଶିତ
ରସାଳ ବକୁଳ ପୁଣି ମର୍ମଭେଦୀ ଅତି ।

ବିଦୂ—ଆପଣ ଆଉ କାନ୍ଦନ୍ତୁ ନାହିଁ—ଅଚିରେ ଅନଙ୍ଗ ଶୁଭଫଳ ଦେବ ।

ରାଜା—ଶିରୋଧାର୍ଯ୍ୟ ବିପ୍ରବାକ୍ୟ ; (ପରିକ୍ରମଣ)

ବିଦୂ—ଦେଖନ୍ତୁ ଦେଖନ୍ତୁ, ବସନ୍ତ ଆସିଲାରୁ ଏ ପ୍ରମୋଦବନଟି କେମିତି ସୁନ୍ଦର ଦିଶୁଛି ?

ରାଜା—ସଖେ ଦେଖୁଅଛି ମୁହିଁ ପ୍ରତିପଦେ ସବୁ
ହେଲା ଅଗ୍ରେ କୁରୁବକ ବାତେ ଆନ୍ଦୋଳିତ
ସୀମନ୍ତିନୀନଖ ସମ କେମନ୍ତ ପାଟଳ ?
ବେନି ଭାଗେ ଧରି ପୁଣି ନବ ଶ୍ୟାମଳିମା
ଉଲୁଠାଏ କି ମାଧୁରୀ ଅଶୋକ କଳିକା !
ବିକାଶି ଆସୁଛି ରଙ୍ଗେ, ଶୋହେ ସହକାରେ
ଦର ବିକସିତ ନବ ରେଣୁରେ ଧୂସର

**ମନୋଜ୍ଞ ମଞ୍ଜରୀ ଆହା, ବସନ୍ତ ଲକ୍ଷ୍ମୀଙ୍କ**
**ଯୌବନ ସୁଷମା ମଧ୍ୟେ କରେ ଅବସ୍ଥିତ ॥**

ବିଦୂ—ହେଇ ଏହି ବାସନ୍ତୀ ଲତା ମଣ୍ଡପରେ ଶଙ୍ଖମଲମଲ ବେଦୀ ଦିଶୁଛି । ଶମ୍ଭୁ ବଳେ କଉଁବା ଦେଖି ଗଛ ପତ୍ର ସୁଦ୍ଧା ଭକ୍ତିରେ ପୁଷ୍ପ ବୃଷ୍ଟି କରୁଛନ୍ତି ।

ରାଜା—ହଉ, ଯେଉଁପରି ତୁମ୍ଭର ରୁଚି । (ଉପବେଶନ)

ବିଦୂ—ଆପଣ ଏହିଠାରେ ସୁଖରେ ବସି ଗଛପତ୍ରର ଶୋଭା ଦେଖି ଦେଖି ସେ ଉର୍ବଶୀ ଫୁର୍ବଶୀ ପାସୋରି ପକାନ୍ତୁ ।

ରାଜା—(ନିଃଶ୍ୱାସ ପକାଇ) ବୟସ୍ୟ, ଉର୍ବଶୀ ଦର୍ଶନାର୍ଥୀ ମୋହର ଏ ଚଞ୍ଚଳମନ ଏହି ତରୁଲତା ସୌନ୍ଦର୍ଯ୍ୟରେ ସ୍ଥିର ହୋଇ ରହିବ ନାହିଁ । ତାହାହେଲେ ଏପରି ଉତ୍କୃଷ୍ଟ ଉପାୟ ଦେଖ ଯହିଁରେ ମୋହର ମନୋରଥ ପୂର୍ଣ୍ଣ ହେବ ।

ବିଦୂ—(ହସି କରି) ହେଃ, ଅହଲ୍ୟାସକ୍ତ ଇନ୍ଦ୍ରଙ୍କ ଲାଗି ସ୍ୱର୍ଗର ବୈଦ୍ୟ ଯେମିତି ପାଗଳ ହୋଇଥିଲେ, ମୁଁ ଏବେ ସେମିତି ଏ ଉର୍ବଶୀ ପ୍ରୀତବନ୍ତା ରାଜାଙ୍କ ସାଙ୍ଗରେ ପଡ଼ି ପାଗଳ ହେବି ପରା !

ରାଜା—ଅତି ସ୍ନେହରୁ ଏପରି ହୋଇଥାଏ ।

ବିଦୂ—ମୁଁ ସେଥିଲାଗି ଏହିକ୍ଷଣି ଧ୍ୟାନରେ ବସୁଛି । ଆପଣ ଆଉ କନ୍ଦା କନ୍ଦି କରି ମୋର ଧ୍ୟାନ ଭାଙ୍ଗନ୍ତୁ ନାହିଁ । (ଧ୍ୟାନାଭିନୟ)

ରାଜା—(ଲକ୍ଷଣ ଦେଖି ସ୍ୱଗତ)

ଏ କଣ ? ଶୁଭଲକ୍ଷଣ ! ରହିଁ ରହିଁ ଏବେ
ସର୍ବ ଅବୟବ ମୋର ପୁଲକେ ପୂରିତ
କାହିଁ ପାଇଁ ଏ ବିକାର ? ସେ ସୁରସୁନ୍ଦରୀ
ନୁହେତ ସୁଲଭ କେବେ; ପୂରିବ କି ସତେ
ଦୁର୍ଲଭ କାମନା ମୋର ଅଦୂର ଭବିଷ୍ୟେ ?

ନୋହୁଥିଲେ ଅବା କାହିଁ ଶତ୍ରୁ ଅଣାଳତା
ବୈରାଗ୍ୟ ମରୁରେ ଆଜି ଉଆନ୍ତା ଦର୍ଶନ ।

(ଅଶାନ୍ତ ଭାବରେ ଅବସ୍ଥାନ)

[ବ୍ୟୋମଯାନରେ ଉର୍ବଶୀ ଓ ଚନ୍ଦ୍ରଲେଖାର ପ୍ରବେଶ]

ଚନ୍ଦ୍ର—ସଖି, ଅକାରଣରେ ଲୁଅଁଳେ ଯିବା !

ଉର୍ବ—ଚନ୍ଦ୍ର, ହେମକୂଟ ପର୍ବତରୁ ଫେରିବେ ବୋଲି ମୋହପାଇଁ କଣ ଇଙ୍ଗିତ କରିଥିଲ ପରା ? ଏତେକ୍ଷଣି ପୁଣି କଣ ପଚାରୁଚ ?

ଚନ୍ଦ୍ର—ତେବେ କଣ ସଖି, ମହାରାଜାଙ୍କ ଅଡ଼କୁ ଏବେ ଯାଉଚ ?

ଉର୍ବ—କଣ ହେଲା ସେଥିଁ ? ଏଥିରେ କଣ ମୋତେ ଲାଜ ମାଡ଼ିବ ?

ଚନ୍ଦ୍ର—ତୁମେ ଆଗରୁ କାହାକୁ ପଠେଇଚ କି ?

ଉର୍ବ—ମୋ ମନକୁ ପଠେଇଚି ।

ଚନ୍ଦ୍ର—ତେବେ ଆପେ ତାକୁ ଫେରାଇ ଆଣ ।

ଉର୍ବ—ଚନ୍ଦ୍ର ! ରଥପଥ ପଠାଇଚ ନା, ମୁଁ କେମିତି ଫେରାଇ ଆଣିବି ?

ଚନ୍ଦ୍ର—ଏଥିକି ମୋହର ଆଉ ଉତ୍ତର ନାହିଁ ।

ଉର୍ବ—ତେବେ ସଖି, ବାଟ କଢାଅ । ଆଉ ଯେମିତି କିଛି ବିପତ୍ତି ନ ପଡ଼େ ।

ଚନ୍ଦ୍ର—ସଖି, ମନରେ ଆଉ କିଛି ପାଞ୍ଚ ନା—ଦେବଗୁରୁ ଆମ ଦୁହିଁଙ୍କି ଯେଉଁ ଅପରାଜିତା ମନ୍ତ୍ର ଶିଖେଇ ଦେଇଛନ୍ତି, ସେଥିରେ ଆମର କେହି କିଛି କରି ପାରିବେ ନାହିଁ ।

ଉର୍ବ—ଚନ୍ଦ୍ର, ମୁଁ ତାକୁ କେମିତି ପାସୋରି ପକେଇଲିଣି !

ଚନ୍ଦ୍ର—ସଖି ! ଦେଖିଛି ଆନାଥ ଗଙ୍ଗା ଯମୁନା କୂଳରେ ମହାରାଜାଙ୍କ ନଅର – ଠିକ୍ ଦର୍ପଣରେ ମୁହଁ ଦେଖିଲା ପରି କି ସୁନ୍ଦର ଦିଶୁଚି ।

ଉର୍ବ—(ଦେଖି) ତେବେ ତ ସ୍ୱର୍ଗ ଏଠାକୁ ଉଠି ଆସିଚି କହ ? (ବିଚାର କରି) ଚନ୍ଦ୍ର, କହିଲ ଭଲା ମହାରାଜା ଆମକୁ କେଉଁଠାଇଁ ଦେଖା ଦେବେ ?

ଚିତ୍ର—ଅଗରେ ନନ୍ଦନବନ ସମାନ ଏ ଯେଉଁ ପ୍ରମଦବନ୍ଦ୍ର ଦିଶୁଛି ସେଠି-ଠାକୁ ଗଲେ ଜାଣିମ । (ଉଭୟର ଅବତରଣ)

ଚିତ୍ର—(ଦେଖି, ଅନନ୍ଦରେ) ହେଇଟି ସଖି ଏଣିକ ଚାହିଁ, ଉଦୟବେଳେ କୁମୁଦବନ୍ଧୁ କୌମୁଦୀକୁ ଚାହିଁରହିଲାପରି ତୁମକୁ ପ୍ରାଣବନ୍ଧୁ ଚାହିଁ-କରି ବସିଛନ୍ତି ।

ଉର୍ବ—ଚିତ୍ର, ନୂଆ ଦେଖିଲାରୁ ମୋତେ କାହିଁକି ଆଜି ଅଧିକ ସୁନ୍ଦର ଦିଶୁଛନ୍ତି ?

ଚିତ୍ର—ବଳେ ଦିଶିବେ ତ ? ତେବେ ପାଖକୁ ଯିବା ଚାଲ ।

ଉର୍ବ—ମୁଁ ଯାଉଚି, କୁହୁକରେ ଛପି କରି ତାଙ୍କ ପାଖରେ ଶୁଣେଁ-କାହା ସାଙ୍ଗରେ କି କଥା ସବୁ ପଡ଼ୁଚି ? ( ପଟାଚ୍ଛାଦନ ଓ ଅବସ୍ଥାନ । )

ଚିତ୍ର—ଯେମିତି ତୁମ ଇଚ୍ଛା—(ତଥା ଅନୁଷ୍ଠାନ)

ବିଦୂ—ଭବ-ଭବ ଏତେବେଳକୁ ମିଳନର ଉପାୟ ପାଇଲି ।

ରାଜା—[ନିରୁତ୍ତର]

ଉର୍ବ—ଏଡ଼େ ରୂପବତୀ କିଏ ଅଛି ଯେ, ତାକୁ ପୁଣି ଏ ବସି ଭାଳୁଛନ୍ତି ?

ଚିତ୍ର—ଅଗୋ, ଛାର ସ୍ତ୍ରୀସ୍ୱପର କଣ ଗୁଡ଼ାଏ ଭାବୁଚ । ଅପେ କଣ ଜାଣି ପାରୁ ନାହିଁ ?

ଉର୍ବ—ଚିତ୍ର, ଧ୍ୟାନରେ ଏହିକ୍ଷଣି ସେ କଥା ଜାଣିବାକୁ ଡ଼ର ମାଡୁଚି । କେ ଜାଣି ଯେବେ ଆଉ କିଏ ହେଇଥିବ ?

ବିଦୂ—ଉପାୟ ପାଇଲଣି ବୋଲି କହିଲି ପରା ?

ରାଜା—କହ, ତେବେ ।

ବିଦୂ—ଆପଣ ମୁହୂର୍ତ୍ତେଟାଏ ନିଦ୍ରାକୁ ଭଜନ୍ତୁ । ସ୍ୱପ୍ନରେ ହେଲେ ଥରେ ସଙ୍ଗମ ହେବ । ନାହିଲେ ଉର୍ବଶୀଙ୍କର ଖଣ୍ଡେ ଚିତ୍ରପଟ ଥିଲି ଦେଖୁଥାନ୍ତୁ ।

ଉର୍ବ—[ସହର୍ଷେ] ଅରେ ବିକଳ ମନ, ଥୟ ହୋ—ଥୟ ହୋ—

ରାଜା—ବୟସ୍ୟ, ମୋହ ପକ୍ଷରେ ଉଭୟ ଅସମ୍ଭବ ! ସର୍ବଦା ମୋହର

ହୃଦୟ ମନ୍ମଥବାଣରେ ଜର୍ଜରିତ । ସେଥିରେ ନିଦ୍ରା ବା କପର ହେବ ? ଆଉ ହୃଦୟପଟରେ ସେ ସୁନ୍ଦରୀର ଚିତ୍ର ମୂର୍ତ୍ତି ଦେଖିଲେ ସଦା ମୋ ଚକ୍ଷୁରୁ କେଣ ଅଶ୍ରୁଧାର ନ ଗଡ଼ିବ ?

ଚିତ୍ର—ସଖି, ଶୁଣିଲ ଟି ?

ଉର୍ବ—ଶୁଣିଛି, ଏତିକରେ ଏବେ କଣ ଜଣା ଯିବ ?

ବିଦୂ—ମୋହର ବୁଦ୍ଧି ବନ୍ଧ୍ୟା ଏତିକି ।

ରାଜା—[ଦୀର୍ଘଶ୍ୱାସ ତ୍ୟାଗକରି] ବୋଧ ହୁଏ ସେ ମୋହର ଦୁଃସହ ଅନ୍ତର୍ବେଦନା ଜାଣି ନ ଥିବେ ଅଥବା ଧ୍ୟାନ ବଳରେ ଜାଣି ହୁଏତ ଅବଜ୍ଞା କରୁଥିବେ । ତଥାପି ସେପରି ଦୁର୍ଲଭ ରମଣୀଠାରେ ମୋର ସମ୍ଭୋଗ ସ୍ପୃହା ଜନ୍ମାଇ କନ୍ଦର୍ପ ଯେବେ ସୁଖୀ ହେବ—ହେଉ ।

ଚିତ୍ର—କଟଗୋ, ଶୁଣୁଛ ତ ?

ଉର୍ବ—ହୁଁ—ହୁଁ, ମତେ ଏବେ ଏମିତ ଭାବୁଛନ୍ତି ? ଆଗକୁ ଯାଇ ଉତ୍ତର ଦେବାକୁ ତ ବଳି ପାରୁନାହିଁ । ତେବେ ଧ୍ୟାନବଳରେ ଛପି ଏହି ଭୂର୍ଜପତ୍ରରେ ଉତ୍ତର ଦିଏଁ !

ଚିତ୍ର—ମୁଁ ତ ସେଥି କହୁଥିଲି ।

[ଉର୍ବଶୀର ଲେଖାଭିନୟ ପୂର୍ବକ ପତ୍ର କ୍ଷେପଣ ।]

ବିଦୂ—(ଚିହ୍ନି) ଅରେ-ରେ-ରେ, ସାପକାତିଟାଏ କୋଉଁଠୁ ଆଗକୁ ଉଡ଼ି ଆସିଲା ? ଖାଇଲା-ଖାଇଲା ! !

ରାଜା—(ଚିନ୍ତା କରି) ନାହିଁ-ନାହିଁ । କାତି ନୁହେଁ । ଏତ ଭୂର୍ଜପତ୍ରରେ କଣ ଲେଖାଥିଲା ପରି ଦିଶୁଛି !

ବିଦୂ—ହେଲେ ହୋଇଥିବ, ମୋତେ ଲାଗେ ଶୂନ୍ୟରେ କୋଉଁଠି ସେ ଆପଣଙ୍କର ଏଦଶା ଦେଖି ଆପଣା କଥା ତାକୁ ଲେଖି, ପକେଇ ଦେଇଛନ୍ତି ।

ରାଜା—ମନୋରଥର ଅସାଧ୍ୟ କିଛି ନାହିଁ (ପତ୍ର ଗ୍ରହଣପୂର୍ବକ-ପାଠ ଓ ଆନନ୍ଦ) ଠିକ୍ ଅନୁମାନ କରିଛ ?

ବିଦୂ—ଆପଣ ଟିକିଏ ଅନୁଗ୍ରହ କରି ଶୁଣାନ୍ତୁ-ସେଥିରେ କଣ ଲେଖାଅଛି ?

ଉର୍ବ—ବାହାବ୍ବାରେ ରସିକ,

ରାଜା—ଶୁଣ, (ପଠନ) "ମୋହୁଦ ବେଦନା ନାଥ, ଜାଣି ନାହିଁ କିଛି
ଦିବାନିଶି ତୁମ୍ଭପରି ମୁହିଁ ଝୁରୁଅଛି ।
ପାରିଜାତ ଫୁଲଶଯ୍ୟା କଣ୍ଟକ ସମାନ
ନନ୍ଦନବନ ପବନ ମୋ ଦେହେ ଦହନ ।"

ଉର୍ବ—ଏବେ କଣ କହିବେ ?

ଚିତ୍ର—ସେ ଅଉ କହିବେ କଣ ? ତାଙ୍କ ରୂପତ କହି ଦେଉଛି ।

ବିଦୂ—ଯାହା ହେଉ, ଭୋକିଲାବେଳେ ମୋତେ ସିଧାଟାଏ ମିଳିଲା ପରି ଆପଣଙ୍କୁ ଆଗ ଗୋଟିଏ ଦମ୍ଭ ଧରିବାର ଉପାୟ ମିଳି ଗଲା ।

ରାଜା—ବୟସ୍ୟ, କେବଳ ଆଶ୍ୱାସନାର ଉପାୟ ମିଳି ନାହିଁ । ମୋହରି ସମାନ ଅବସ୍ଥା ବର୍ଣ୍ଣନ କରିବା ଦ୍ୱାରା ମଦିରେକ୍ଷଣୀର ସେହି ଚନ୍ଦ୍ରାନନ ଏହିକ୍ଷଣି ମୋ ଆନନ ସଙ୍ଗେ ମିଳି ଗଲାପରି ଜଣା ଯାଉଛି ।

ବିଦୂ—ତେବେ ଆମ୍ଭ ଦୁହିଙ୍କର ମନ ଏକାପରି ।

ରାଜା—ବୟସ୍ୟ, ମୋହର ଏହି ଘର୍ମାକ୍ତ ହସ୍ତରେ ଲେଖାଟି ମଳିନ ପଡ଼ି ଯାଉଛି । ତୁମେ ତାହା ହେଲେ ପ୍ରିୟତମାଙ୍କର ଏହି କୃପାଲିପିକି ଧରି ଥାଅ ।

ବିଦୂ—[ଗ୍ରହଣ କରି] ଧରିଥିବି କାହିଁକି ? ଆପଣଙ୍କ ପ୍ରିୟତମା କଣ ସୁନ୍ଦର ଫୁଲଟିଏ ଦେଖାଇ ଦେଇ ଫଳ ବେଳକୁ ଅଉ ଦେଖା ଦେବେ ନାହିଁ ?

ଉର୍ବ—ଚିତ୍ର, ମୁଁ ଅଉ ସମ୍ଭାଳି ପାରିବି ନାହିଁ । ମୁଁ ଏଠାଇଁ ମନକୁ ବୁଝଉଁ ବୁଝଉଁ ତୁମେ ଚଞ୍ଚଳ ତାଙ୍କ ଆଗକୁ ଯାଇ ଯାହା ସୁନ୍ଦର ଦିଶିବ-ମୋହ ଲାଗି କହ ।

ଚିତ୍ର—[ ପଟ୍ଟ କ୍ଷେପଣପୂର୍ବକ ପାଖକୁ ଯାଇ ] ଜୟ୍ତୁ ଜୟ୍ତୁ, ମହାରାଜ ।

ରାଜା—(ସହର୍ଷେ) ଆପଣଙ୍କର ସବୁ କୁଶଳ ତ ? କିନ୍ତୁ ସୁମୁଖି, ଗଙ୍ଗା ଯମୁନା ତୁଲ୍ୟ ଦୁଇ ସଖୀଙ୍କର ମିଳନରେ ଯେପରି ଆନନ୍ଦ ହୋଇଥିଲି, ଆଜି ତୁମକୁ ଏକାକିନୀ ଦେଖି ସେପରି ଆନନ୍ଦ ହେଲି ନାହିଁ ।

ଚିତ୍ର—ଆଗେ ବିନା ମେଘ ଦେଖା ଦିଏ ? ପଛେ ଯାଇ ବିଜୁଳି ନା

ବିଦୂ—(ଅଧୋମୁଖେ) କଣ ଉର୍ବଶୀ ଆସି ନାହାନ୍ତି ? ଏ ତେବେ ତାଙ୍କର ସହଚରୀ ?

ଚିତ୍ର—ମହାରାଜ, ଉର୍ବଶୀ ହାତ ଯୋଡ଼ି କରି କହିଅଛନ୍ତି,—

ରାଜ —କଣ କହିଛନ୍ତି !

ଚିତ୍ର—ମହାରାଜ ମତେ ଆଗେ ଅସୁରଙ୍କ ପୀଡାରୁ ଉଦ୍ଧାର କରିଥିଲେ । ଏହିକ୍ଷଣି ପଞ୍ଚଶର-ପୀଡା, ଏଥିରୁ ଉଦ୍ଧାର କରିବା ପାଇଁ ତାଙ୍କରି ପାଖରେ ଶରଣ ପଶିଲି ।

ରାଜା—ସୁବଦନେ, ଜଣାଇଲ ସଖୀର କଷଣ,
ନ ଜାଣ କି, ସେଥିଲାଗି ପୁରୁରବା ମନ
ସନ୍ତାପିତ ସଦା ଦୁଃଖେ, ପ୍ରଣୟ୍ଗିହୃତକେ
ଉଭୟେ ସମାନଦୁଃଖୀ, ପାଶେ ଏହିରୂପେ
ଦର୍ପୀ କନ୍ଦର୍ପ ଏ ଭବେ, ଯାଅ ଯାଅ ବେଗେ
ଏ ସୁଯୋଗେ କର ଯତ୍ନ ଦୋହିଙ୍କ ମିଳନେ
ତପ୍ତେ ତପ୍ତ ଲୌହ ବିନା ମିଳିବ ସହଜେ ?

ଚିତ୍ର—(ଉର୍ବଶୀ ପାଖକୁ ଯାଇ) ସଖି, ଚଞ୍ଚଳ ଆସ, ତୁମଠୁଁ ତାଙ୍କର ଶରପୀଡା ବଳି ପଡ଼ିଚି ଦେଖି ମୁଁ ଦୂତ ହୋଇ ଆସିଲି ।

ଉର୍ବ—(ପଟ୍ଟକ୍ଷେପଣପୂର୍ବକ) ଚିତ୍ର, ମତେ କେତେ ଚଞ୍ଚଳ ଛାଡ଼ି ଦେଇଗଲ ?

ଚିତ୍ର—ଅଭ୍ର ମୁହୂର୍ତ୍ତରେ ଜଣାଯିବ କିଏ କାହାକୁ ଛାଡ଼ଯିବ । ଏଣିକି ତୁମ କଥା ଅଗ ତୁମେ ରଖ ।

ଉର୍ବ—(ସଲଜ୍ଜ ଓ ସଭୟ ଭାବରେ) ଜୟ ଜୟ ମହାରାଜ,

ରାଜା—(ସହର୍ଷେ) ସୁନ୍ଦରି । ଜୟକରି ଜୟଶବ୍ଦ ଉଚ୍ଚାରଣ କରୁଛ ? ଇନ୍ଦ୍ରଙ୍କ ବିନା ଅଉ କିଏ ଜୟୀ ହୋଇ ପାରେ ?

( ହସ୍ତରେ ଧରି ଆସନରେ ବସାଇବା )

ବଧୂ—ଏ କି ମର୍ଯ୍ୟାଦା ! ମହାରାଜାଙ୍କ ସହଚରଙ୍କୁ ନମସ୍କାର ନାହିଁ ?

ଉର୍ବ—(ସ୍ମିତପୂର୍ବକ ପ୍ରଣାମ)

ବଧୂ – ସ୍ୱସ୍ତି-ସ୍ୱସ୍ତି ।

[ନେପଥ୍ୟ ଦେବଦୂତ-ଚିତ୍ରଲେଖା, ଉର୍ବଶୀଙ୍କି ଚଞ୍ଚଳ କର । ଅଗ୍ୟପ୍ୟ ଭରତମୁନି ଅଷ୍ଟରସରେ ଯେଉଁ ନାଟକ ରଚନା କରିଥିଲେ, ତାହାର ଅଭିନୟ ଆଜି ଦେବରାଜ ସମସ୍ତ ଦିଗପାଳଙ୍କ ସହିତ ଦେଖିବେ ।]

[ସମସ୍ତଙ୍କର ଶ୍ରବଣାଭିନୟ ଏବଂ ଉର୍ବଶୀର ବିଷାଦ ଅଭିନୟ]

ଚିତ୍ର – ସଖି, ଦେବଦୂତ ଯାହା ଯାହା କହିଲେ ସବୁ ଶୁଣିଲ ? ତେବେ ମହାରାଜାଙ୍କୁ ଜଣାଅ ।

ଉର୍ବ – [ଦୀର୍ଘଶ୍ୱାସତ୍ୟାଗକରି] କଣ କହିବି ! କିଛି ଦିଶୁ ନାହିଁ ?

ଚିତ୍ର – ମହାରାଜ, ଉର୍ବଶୀ କହୁଛନ୍ତି ଯେ-ସେ ପରାଧୀନା, ମହାରାଜାଙ୍କର ଅନୁମତି ହେଲେ ସେ ଦେବରାଜାଙ୍କ ସମ୍ମୁଖକୁ ଯାଇ ଆପଣାର ଦୋଷ ଛଡ଼ାଇବେ ।

ରାଜା – [ବାକ୍ୟ ଯୋଜନା କରି] ଅମ୍ଭେ ତୁମ୍ଭର ପ୍ରଭୁଦେଶରେ ବାଧା ଦେବୁଁ ନାହିଁ । ତେବେ ଏତିକି ବକ୍ତବ୍ୟ ଯେ ଏହାଙ୍କୁ ଟିକିଏ ସ୍ମରଣ ରଖିଥିବେ ।

ଉର୍ବ – [ଦୁଃଖାଭିନୟ ପୂର୍ବକ ରାଜାଙ୍କୁ ଚାହିଁ ଚାହିଁ ପ୍ରସ୍ଥାନ]

ରାଜା – [ନିଃଶ୍ୱାସ ପକାଇ] ବର୍ତ୍ତମାନ ମୋହର ଏ ଚକ୍ଷୁଦ୍ୱୟ ନିରର୍ଥକ ହେଲାପରି ବୋଧ ହେଉଛି ।

ବଦୁ—[ପତ୍ର ଦେଖାଇବାକୁ ଇଚ୍ଛାକରି] ହେଉଛି ଭୂର୍ଜ—[ଅର୍ଦ୍ଧୋକ୍ତିକରି] ଅରେ ସର୍ବନାଶ୍ ଉର୍ବଶୀଙ୍କୁ ଅଖି ପୂରେଇ ଦେଖୁ ଦେଖୁ ଏବେ ସେ ପତ୍ର ଖଣ୍ଡିକ କେଉଁଠି ହଜିଗଲାଣି—ମତେ ଜଣାନାହିଁ ।

ରାଜା—କଣ କହୁଥିଲ ?

ବଦୁ—ଏହି କଥା କହୁଥିଲି ଯେ ଆପଣ ଅଉ ନିରାଶ ହୁଅନ୍ତୁ ନାହିଁ । ଉର୍ବଶୀଙ୍କର ଆପଣଙ୍କ ଠାଇଁ ଯେପରି ଭାବ ଦେଖିଲି, ସେଥିରେ ସେ କେବେଁ ଢ଼ିଲା କରିବେ ନାହିଁ ।

ରାଜା—ମୋହ ମନରେ ମଧ୍ୟ ସେହି କଥା ଅଛି । ଯାବା ସମୟରେ ତାହାଙ୍କର ଦୀର୍ଘ ନିଃଶ୍ୱାସ ସଙ୍ଗେ କୁଚ କମ୍ପନ ଦେଖି ଅନୁମାନ କଲି ଯେ, ଉର୍ବଶୀ ପରାଧୀନ ଦେହ ମଧ୍ୟରୁ ତାଙ୍କର ସ୍ୱାଧୀନ ହୃଦୟଟିକୁ ବାହାର କରି ମୋତେ ସମର୍ପଣ କରି ଗଲେ ।

ବଦୁ—[ ସ୍ୱଗତ ] ଓଃ, ମୋ ଛାତିଟା ଖାଲି ଦପ୍ ଦପ୍ ପଡୁଚି । ଅଉ ଟିକିଏ ଗଲେ କେଜାଣି, ପୁଣି ସେ ଭୂର୍ଜପତ୍ରଟାକୁ ମାଗିବେ ?

ରାଜା—ବୟସ୍ୟ, କାହିଁରେ ବର୍ତ୍ତମାନ ମନ ପରିବର୍ତ୍ତନ କରିବ ? [ସ୍ମରଣ କରି ] ହଁ, ସେ ଭୂର୍ଜପତ୍ରଟି କାହିଁ ? ଟିକିଏ ଆଣିଲ ।

ବଦୁ—[ ଚତୁର୍ଦ୍ଦିଗକୁ ଚାହିଁ-ଦୁଃଖରେ ] କାହିଁ । ସେ ପତ୍ର ତ ଅଉ ଦିଶୁ ନାହିଁ । ମୋତେ ଲାଗେ ଉର୍ବଶୀଙ୍କ ପଛେ ପଛେ ସେ ଚାଲିଗଲା ?

ରାଜା—[ ଅସୂୟା ସହକାରେ ] ଦେଖୁଛି—ଏ ମୂର୍ଖଟା ସବୁଠାରେ ଅସାବଧାନ । ନାହିଁ ନାହିଁ, ସେ କଥା ହେବ ନାହିଁ । ଅଉଥରେ ଭଲ କରି ଖୋଜ ।

ବଦୁ—[ ଉଠି ] ଏଇଠିଁ କୋଉଁଠି ନଷ୍ଟେ ଥିବ । ଏଇ ପାଖରେ ହବପରି ? ନାହିଁ ନାହିଁ ଏ ପାଖରେ—ଏବେଁ, ଏ ପାଖ ନୁହେ ସେପାଖ [ ବହୁ ଭଙ୍ଗୀରେ ଅନ୍ୱେଷଣ ]

[ କାଶୀରାଜ ପୁତ୍ରୀ ରାଜ୍ଞୀ, ଚେଟୀ ଏବଂ ପରିଜନବର୍ଗର ପ୍ରବେଶ । ]

ରାଜ୍ଞୀ – ଅଲୋ ନିପୁଣିକା, ସତ କହିଲୁ, ତୁ ତାଙ୍କୁ ସଙ୍ଗୀତରଙ୍କ ସାଙ୍ଗରେ ବସିଥିବାର ଦେଖିଛୁ ?

ଦାସୀ – ମୁଁ କେବେ ଭଲା ମଣିମାଙ୍କ ଆଗରେ ମିଛ କହିବି ?

ରା – ଅଚ୍ଛା ହଉ, ମୁଁ ଆଗ ଏହି ଗଛ ଆଢୁଆଳରେ ଲୁଚେଁ, ଦେଖେଁ ସେମାନଙ୍କର କି ଗୁପ୍ତ କଥା ପଡ଼ୁଛି । ତେବେ ଯାଇଁ ତୋ କଥା ସତ କି ମିଛ ଜାଣିବ ।

ଦା – ଯେମିତି ଇଚ୍ଛା ।

ରା – [ ପରିକ୍ରମଣ ଓ ସମ୍ମୁଖକୁ ଦୃଷ୍ଟିପାତ କରି ] ନିପୁଣିକା, ଦେଖିବୁଟି ନୂଆ କନା ପରି କଣ ଖଣ୍ଡେ ଏ ଦକ୍ଷିଣା ପବନରେ ଏଣିକି ଉଡ଼ି ଆସିଲା ?

ଦା – [ ଚିନ୍ତା କରି ] ଏ ନିଶ୍ଚେ ଖଣ୍ଡେ ଭୁର୍ଜ ପତ୍ର ହବ । ପବନରେ ଏପାଖ ସେପାଖ ଓଲଟୁଛି । ଏଥିରେ କଣ ଲେଖା ହେଲାପରି ଦିଶୁଛି । ଏ କି ଆଚମ୍ବିତ ! ଅନଉଁ ଅନଉଁ ସେ କଣ ମଣିମାଙ୍କ ପା–ଲଗି ହୋଇ ଗଲାଣି । [ ପାଦତଳୁ ଧରି ] ଦେଇଛି ଏଥିରେ କଣ ଲେଖା ହୋଇଛି–ପଢ଼ନ୍ତେ –

ରା – ତୁ ଆଗ ପଢ଼ି କଣ ଅଛି । ଯେବେ ବିରୋଧ କିଛି ନ ଥିବ ତେବେ ଶୁଣିବ ।

ଦା – [ ପଢ଼ିସାରି ] ମଣିମା, ଲୋକେ ଯାହା କହୁଥିଲେ ଏତ ସେଇଟା, ମତେ ଲାଗେ ଏ ଗୋଟାଏ ଚୌପଦ ହବ । ଉର୍ବଶୀ ମହାରାଜାଙ୍କ–ଠାକୁ ଲେଖିଚନ୍ତି । ମତେ ଲାଗେ ସେଇ ଗୋଟେଇଁ ଯୋଗରୁ ସ୍ନା ଆମ ହାତୁରେ ଆସି ପଡ଼ିଲା ।

ରା – ହଉ ତେବେ, ମୋତେ ତାହା ପଢ଼ି ଶୁଣେଇବୁଟି ।

ଦା—(ପତ୍ର ପାଠ ।)

ରା—ଅଲୋ, ଏଇ ଉପହାରୁଟି ଘେନି ଚାଲ, ସେଇ ଅପ୍ସରାପତିଙ୍କି ଦେଖେଇବା । (ପରିଜନସହ ଲତା ଗୃହଗମନ)

ଦା—ଯେମିତ ଆଜ୍ଞା, ( ଅନୁଗମନ ) ।

ରଜା—ଭଗବନ୍ ମଳୟାନଳ । ହେ ବସନ୍ତର ସଖା, ତୁମ୍ଭେ ସୁବାସ ନିମିତ୍ତ ସୁରଭି ପୁଷ୍ପରୁ ରେଣୁ ହରଣ କର । ପ୍ରିୟତମାର ପ୍ରେମ-ଲିପି ଖଣ୍ଡି ହରଣ କରି ତୁମ୍ଭର କି ଫଳ ହେବ ! ତୁମ୍ଭେ ତ ଜାଣ ଏହି ପ୍ରକାର ନାନା ବଚନୋଦରେ ଆଶ୍ୱାସନା ପାଇ ମୁଁ ଏ ଜୀବନ ଧରିଛି ।

ଦା—ମହିମା, ହେଇଟି ସେଇ ଭୂର୍ଜପତ୍ରର କଥା ପଡ଼ୁଛି ।

ରା—ହଉ, ତୁ ତୁନି ହୋ, ତା ପଛକୁ କଣ ହଉଛି ଆଗେ ଦେଖାଯାଉ—

ବଦୂ—ଦେଖନ୍ତୁ ଏଇଟା କଣ? ନା-ନା, ଏଇଟା ଗୋଟାଏ ମାଟିଆ ମୟୂର ପର ! ମୁଁ ବରୁଥିଲି ସେଇ ଭୂର୍ଜପତ୍ର ଅବା ହବ ?

ରାଜା—ଓଃ — କି ସର୍ବନାଶ ହେଲା !

ରା—[ସହସା ନିକଟକୁ ଯାଇ] ଏତେ ଶୋକ କାହିଁକି — ହେଇଟି ସେଇ ଭୂର୍ଜପତ୍ର —

ରାଜା—[ସମ୍ଭ୍ରମେ-ସ୍ୱଗତ] ଏ କଣ, ସ୍ୱୟଂ ଦେବୀ ଉପସ୍ଥିତା — [ଅପ୍ରତିଭ ଭାବରେ — ପ୍ରକାଶ୍ୟେ] ଦେବି ! ଶୁଭାଗମନ କର ।

ବଦୂ—[ଭୃକୁଟୀ କରି] ଏହି କ୍ଷଣି ନ ଅସିଥିଲେ ଭଲ ହୋଇଥାନ୍ତା !

ରାଜା—[ଜନାନ୍ତିକେ] ବର୍ତ୍ତମାନ ଏଥିର ପ୍ରତିକାର କଣ ?

ବଦୂ—[ ଜନାନ୍ତିକେ ] ଏହିକ୍ଷଣିତ ଗଣ୍ଠିଲି ସହିତେ ଚୋର ଧରା ପଡ଼ିଛି-ଅଉ କଥାରେ କିଛି ହେବ ନାହିଁ ।

ରାଜା—[ଅଧୋମୁଖେ] ମୂର୍ଖ, ଏ ପରିହାସର ସମୟ ନୁହେ । [ପ୍ରକାଶ୍ୟେ] ଦେବି । ଏପତ୍ରକୁ ତ ଖୋଜୁ ନ ଥିଲ । ଯାହାକୁ ଖୋଜିବା ପାଇଁ ଏତେ ଧୂମଧାମ ଲାଗିଛି ସେ ଖଣ୍ଡିଏ ମନ୍ତ୍ରଣା ପତ୍ର ।

ରା—ହଁ, ଆପଣାର ଭାଗ୍ୟକୁତ ଗୁପ୍ତ ରଖିବା ଉଚିତ ହେଉଛି ।।

ବଦୂ—ଦେବି, ଚଞ୍ଚଳ ଏ ବ୍ରାହ୍ମଣର ଭୋଜନ କଥା ଅଗେ ବୁଝନ୍ତୁ । ପିତ୍ତଶାନ୍ତ ହେଲେ ଯାଇଁ ଧୈର୍ଯ୍ୟ ଧରିବ ।

ରା—ନିପୁଣିକା, ବ୍ରାହ୍ମଣଙ୍କ ସହଚରଙ୍କୁ ଖାସା ସୁବୋଧ ଦେଉଛନ୍ତି ।

ବିଦୂ—ଦେଖନ୍ତୁ—ପୂର୍ବ ଜ୍ୟୋତିଷଙ୍କଠି ଯାଇଲେ ଗ୍ରହର କଣ ପିଶାଚ କଣ ସମସ୍ତେ ଶାନ୍ତ ହୁଅନ୍ତି ।

ରାଜା—ମୂର୍ଖ, ବଳକାରରେ ମୋତେ ଏବେ ଅପରାଧୀ ବୋଲି ପ୍ରମାଣ କରି ଦେଉଛ !

ରା—ପ୍ରଭୁ, ତୁମ୍ଭର କିଛି ଅପରାଧ ନାହିଁ-ମୁହିଁ ଏକା ଅପରାଧିନୀ ! ଏଠାକୁ ଆସି ତୁମ୍ଭର ପ୍ରତିକୂଳ ହେଲି । ଯାଉଛି ଚାଲ—ଆ-ଲୋ ନିପୁଣିକା,

[ଅଭିମାନଭରେ ପ୍ରସ୍ଥାନୋଦ୍ୟତା ।]

ରାଜା—ସମ୍ବର ସମ୍ବର ଦେବି, କୋପକୁ ସମ୍ବରି
ରୋଷନାଶି ପରିତୋଷ ପ୍ରକାଶ ସୁନ୍ଦରି !
ହେଉ ଅପରାଧୀ ମୁହିଁ, ହୁଅ ସୁହାସିନୀ ;
ସେବ୍ୟ ଜନ ସେବକରେ କହେ ଯଦି ଦୋଷ
ନିର୍ଦ୍ଦୋଷ ହେଲେବି ଦୋଷ ହୁଏଇ ତାହାର ! !

(ପାଦତଳେପତନ)

ରା—କପଟି, ମୋ ହୃଦୟ ବଜ୍ର ପାଉଲ । ମୁଁ ତୁମ୍ଭର ଏହି ଅନୁନୟ ବିନୟ ଶୁଣିବି ନାହିଁ । କେଜାଣି ପଛେ ଅନୁତାପ କରିବ ବୋଲି ଭୟ କରୁଚି ।

ଦା—ଏଇଅବେଳ ବନେ କରନ୍ତୁ ।

[ରାଜାଙ୍କୁ ତମାମ କରି ପରିଜନସହ ପ୍ରସ୍ଥାନ ।]

ବିଦୂ—ମହାରାଜ, ଦେବୀଙ୍କ ବର୍ଷା ଦିନର ନଈ ପରି ବଡ଼ ଅଗ୍ରସରା ହୋଇ ଚାଲି ଗଲେ । ତେବେ ଉଠନ୍ତୁ ଉଠନ୍ତୁ ।

ରାଜା—(ଉଠି) ମୋହର ତ୍ରୁଟି ଥିଲି ସତରେ, ସହୃଦୟାଙ୍କର
ହୋଇଅଛି ସମୁଚିତ ଏହି ବ୍ୟବହାର,
କରି ଯେତେ ଅନୁନୟ ଉଚ୍ଚ ସ୍ତୁତି-ବାଣୀ
ସେଥିରେ କି ଭୁଲି ଯିବ ରମଣୀ ହୃଦୟ, ?

ସବୁ ସିଙ୍ଗି ଦୋଷ ଗୁଣ ଜଣାଅଛି ଯାଙ୍କୁ
ତାଠାରେ ଲୁଚିବ କାହୁଁ ଏ କୃତ୍ରିମପଣ ?

ବିଦୂ—ଆପଣ ଯାହା କହିଲେ ତାହା ଯଥାର୍ଥ, ମାତ୍ର ଏବେତ ଆପଣଙ୍କୁ ବଡ଼ ଭୁଲ ପଡ଼ିଲା ? ଅଖି ରୋଗୀ, ଆଗରେ ଦୀପ ଶିଖାକୁ ସହି ପାରେ ନାହିଁ ସତ ।

ରାଜା—ନା—ସଖା ସେ କଥା ଆଉ ନ ଧର ଏ ମୁହୂର୍ତ୍ତେ,
ହେଲେହେଁ ଉର୍ବଶୀବଶ, ହୃଦୟ ମୋହର
ତିଳେମାତ୍ର ଭୁଲି ନାହିଁ ଦେବୀଙ୍କର କଥା,
ଦେବୀ ଅନ୍ଦରର ଧନ, ତେଣୁ ଏ ଭାବନା ;
ତେବେ ଧୈର୍ଯ୍ୟ ଧରିବାର ଅଛି ମହୋପାୟ,
କରିଛନ୍ତି ଦେବୀ ମୋର ପ୍ରଣାମ ଲଙ୍ଘନ ?
ଏହିମାନେ କିଛିକାଳ କରିବି ମୁଁ ମାନ ॥

ବିଦୂ—ହଉ; ସେ ଦେବୀ ଦେବୀ କଥା ରହି ଥାଉ; ବର୍ତ୍ତମାନ କ୍ଷୁଧାର୍ତ୍ତ ବ୍ରାହ୍ମଣର ଜୀବ ରହିବା କଥା ବିଚାର କରନ୍ତୁ । ସ୍ନାନ ଭୋଜନ ବେଳା ଆସି ହେଲା—

ରାଜା—( ଉପରକୁ ଚାହିଁ ) ଓହୋ,
ମଧ୍ୟାହ୍ନ ପ୍ରବେଶ ଅସି, ଗ୍ରୀଷ୍ମ ବଶୁଁ ଏବେ
ସନ୍ତାପିତ କେକୀକୁଳ ଆଶ୍ରିଲେଣି ଧୀରେ
ତରୁତଳେ ସୁଶୀତଳ ଗଛ ଅଲବାଳ,
କର୍ଣ୍ଣିକାର ପୁଷ୍ପଗର୍ଭେ ଦେଖ ଅଳି ଭୃଙ୍ଗେ
ଅଙ୍ଗ ଢାଙ୍କି ରହିଲେଣି, ଏଣେ ହଂସାଳୀ
ତପ୍ତବାରି ପରିହରି ତୀର ନଳିନୀକି
ଧରିଲେଣି, ଦେଖ ଦେଖ ତୃଷାତୁର ଶୁକ
ବ୍ୟାକୁଳେ ମାଗଇ ଜଳ ପିଞ୍ଜରା ମଧ୍ୟରେ ॥

( ଉଭୟଙ୍କର ପ୍ରସ୍ଥାନ । )

# ତୃତୀୟ ଅଙ୍କ ।

## ଦୃଶ୍ୟ—ଭରତ ମୁନ ଅଶ୍ରମ ।

( ଦୁଇ ଜଣ ଭରତ ଶିଷ୍ୟଙ୍କର ପ୍ରବେଶ ।)

ପ୍ରଥମ—ଭାଇ ପେଲବ, ଏହ ଅଗ୍ନି ମଣ୍ଡପରୁ ଗୁରୁଦେବ ଯେତେବେଳେ ଇନ୍ଦ୍ରପୁରକୁ ଗଲେ ସେତେବେଳେ ମୁଁ ତାହାଙ୍କ ଅସନ ଧେନ-କର ଯାଇଥିଲି । ସେହ ଦନଠାରୁ ଗୁରୁଦେବ ମୋତେ ଏହ ମଣ୍ଡପ ରଖା କାର୍ଯ୍ୟରେ ନିଯୁକ୍ତ କରଛନ୍ତି । ଅଚ୍ଛା-ତୁମ୍ଭେ ଜାଣ, ଗୁରୁଦେବ ଅମ୍ଭର ନାଟକ ଅଭିନୟ କର ଦେବସଭାର ଚତ୍ତ-ରଞ୍ଜନ କର ପାରଲେ କ ନାହିଁ ?

ଦ୍ୱିତୀୟ—ଭାଇ ଗାଲବ, କେତେଦୂର ଭଲ ହେଲା ତାହା କହ ପାରବ ନାହିଁ । ତେବେ ଏତକ ଜାଣିଛ ଯେ ସରସ୍ୱତୀକୃତ ସେଇ ଲକ୍ଷ୍ମୀ ସ୍ୱୟମ୍ବର ନାଟକ ଅଭିନୟ ବେଳରେ ଉର୍ବଶୀ ନାନା ପ୍ରକାର ନାଟ ରଙ୍ଗରେ ମଜ୍ଜି ଅଭିନୟ କରଥିଲେ—କନ୍ତୁ;—

୧ମ—ତୁମ କଥାରୁ ଜଣା ପଡୁଛି-ସେଥିରେ କଛି ଦୋଷ ଘଟିଥିଲା ପରା ?

୨ୟ—ହଁ-ଗୋଟିଏ ସ୍ଥାନରେ ସେ ଭୁଲିଥିଲେ ।

୧ମ—କଣ ?

୨ୟ—ସେଥିରେ ଉର୍ବଶୀ ହୋଇଥିଲେ ଲକ୍ଷ୍ମୀ, ଆଉ ମେନକା ହୋଇ-ଥିଲେ ବାରୁଣୀ । ଯେତେବେଳେ ମେନକା ପଚାରଲେ ବିଷ୍ଣୁଙ୍କ ସହତେ ତିନପୁରର ସବୁ ମହାରାଜା ଆଉ ଦିଗପାଳମାନେ ଏଠାକୁ ଅସିଛନ୍ତି—ଏହାଙ୍କ ମଧ୍ୟରୁ କାହାଠାରେ ତୁମ୍ଭର ଇଚ୍ଛା ?

୧ମ—ହୁଁ-ତାହାପରେ—

୨ୟ—ସେଠାରେ 'ପୁରୁଷୋତ୍ତମ' କହବେ କଣ, ଉର୍ବଶୀଙ୍କ ମୁହଁରୁ ବାହାର ପଡ଼ିଲା 'ପୁରୁରବା' ?

୧ମ—ହଁ-ଭବିତବ୍ୟତାରେ କିଏ ବାଧା ଦେବ ? ଅମ୍ଭର ବୁଦ୍ଧି ଇନ୍ଦ୍ରିୟ

ସବୁତ ଭଗ୍ୟର ଅଧୀନ ! ଅଚ୍ଛା, ଗୁରୁଦେବତ ସେଥିପାଇଁ ତାଙ୍କ ଉପରେ କୋପ୍ କର ନାହାନ୍ତି ?

୨ଯ୍ଯ—ହଁ, ଗୁରୁଦେବ ତାଙ୍କୁ ତତ୍କ୍ଷଣାତ୍ ଅଭିଶାପ ଦେଲେ, ମାତ୍ର, କ ଭାଗ୍ୟକୁ ଦେବରାଜଙ୍କର ତାଙ୍କଠି ଟିକିଏ ଅନୁଗ୍ରହ ହୋଇଗଲା !

୧ମ—କଣ? କଣ?

୨ଯ୍ଯ—ଗୁରୁଦେବ ତତ୍କ୍ଷଣାତ୍ ଏହାଂ ଅଭିଶାପ ଦେଲେ ଯେ ତୁ ମୋହର ଉପଦେଶ ମତେ ଯେଣୁ କାର୍ଯ୍ୟ ନ କଲୁ, ତେଣୁ ସ୍ୱର୍ଗରେ ଅଉ ତୋତେ ବାସ ନାହିଁ । ତାହାପରେ ଯେତେବେଳେ ନାଟକ ସରିଲା ସେତେବେଳେ ଦେବରାଜ ଉର୍ବଶୀଙ୍କି ଡାକ କରି କହିଲେ ଯେ, ତୁମେ ଯାହାଙ୍କ ପ୍ରେମରେ ଭୋଳ ହୋଇଅଛ ସେ ରାଜା ଅମ୍ଭର ବହୁତ ଉପକାର କରିଅଛନ୍ତି । ଏଣୁ ତାଙ୍କର ଉପକାର କରିବା ଅମ୍ଭର ଉଚିତ ହେଉଛି । ତେବେ ତୁମେ ଆଜିଠାରୁ ଯାଅ । ସନ୍ତାନ ହେବା ଯାଏ ମନ ଇଚ୍ଛାରେ ତାହାଙ୍କର ସେବା ସହବାସ କରିବ ।

୧ମ—ଏ କଥାତ ଉର୍ବଶୀଙ୍କି ଭଲ ହେଲା । ଦେବରାଜ ଅନ୍ୟର ମନକଥା ତ ବେଶ ଜାଣି ପାରନ୍ତି ?

୨ଯ୍ଯ—(ସୂର୍ଯ୍ୟଙ୍କୁ ଦେଖି) ଅରେ ! କଥାବାର୍ତ୍ତା କରୁ କରୁତ ଗାଧୁଆବେଳ ଗଡ଼ିଗଲାଣି ! ହେ-ପୁଣି ଦୋଷୀ ହେବା କି? ଚାଲ ଏଥିକ-ବେଳେ ଗୁରୁଦେବଙ୍କ ପାଖକୁ ଯିବା । (ଉଭୟଙ୍କର ପ୍ରସ୍ଥାନ)



ଦୃଶ୍ୟ—ରାଜ ପ୍ରାସାଦର ଉଦ୍ୟାନ ।

[କଞ୍ଚୁକୀର ପ୍ରବେଶ ।]

କଞ୍ଚୁ—ସମସ୍ତଙ୍କର ଯୌବନ କାଳଟା କାମ ଅର୍ଥ ଭୋଗରେ ବେଶ୍ କଟି ଯାଏ । ବୃଦ୍ଧାବସ୍ଥା ଉପସ୍ଥିତ ହେଲେ ଲୋକେ ପୁଅ ନାତିଙ୍କ ଉପରେ ଭର ପକାଇ ଟିକିଏ ବିଶ୍ରାମ ଲୋଡ଼ନ୍ତି । ମାତ୍ର ଅମ୍ଭର

ଏ ରାଜ ସେବାରେ ଧନାକୁ ବନ ଦେହ କ୍ଷୀଣ ହୋଇ ଅସିଲା, ଏବେ ତାହା କାରାଗାର ପରି ଲାଗୁଛି । ଆଉ ଏ ଜନାନା ଲୋକଙ୍କୁ ସମ୍ଭାଳିବା ବଡ଼ କଷ୍ଟ !!! (ପରିକ୍ରମ କରି) କାଶୀରାଜଦେଜମା ଗୋଟିଏ କଣ ବ୍ରତ କରିଛନ୍ତି ! ସେଥି ପାଇ ମୋତେ ଏହିକ୍ଷଣି ଆଜ୍ଞା ହେଲା ଯେ, ତୁମେ ଯାଅ ମହାରାଜାଙ୍କୁ କହିବ ସନ୍ଧ୍ୟାବନ୍ଦନା ସରିଲେ ଥରେ ଯେମିତି ମୋହର ଦେଖା ହେବ ! (ପରିକ୍ରମ କରି) ବାଃ ବାଃ, ରାଜ ଭବନରେ ଏହି ସନ୍ଧ୍ୟା-ବନ୍ଦନା ବଡ଼ ସୁନ୍ଦର ହୋଇଛି !! ଦେଖ ମନ୍ଦିରେ କେମିତି ଝାଡ଼ରେ ଦୀପ ପିତୁଳା ପରି ଥକା ହୋଇ ଲାଗିଛି । ଖିଡ଼କି ବାଟେ ଧୂପର ଧୂଆଁ ବାହାରି ଅସିଲାବେଳେ ଝରକାରୁ ପରା ଉଡ଼ି ଅସିଲା ପରି ଜଣା ପଡ଼ୁଛି । ଅନ୍ତଃପୁରର ଏ ବୁଢ଼ା ବ୍ରାହ୍ମଣ ଯାକ ଗନ୍ଧପୁଷ୍ପ ଦେଇ ବିଧିମତେ ସନ୍ଧ୍ୟା ପାପ ତା'କୁ ତା' ବସାଉଛନ୍ତି । [ନେପଥ୍ୟାଭିମୁଖେ] ରାଜା ଏହି ବାଟେ ବିଜେ କରୁଛନ୍ତି କି ? ଦାସ ଦାସୀମାନେ ଚାରିପାଖରେ ରତ୍ନଦୀପ ଧରି ହୋଇ ଚାଲିଛନ୍ତି । ଠିକ୍ କନକର ମାଳ ଭିତରେ ଚନ୍ଦ୍ର ପର୍ବତ ପରି ଶୋଭା ପାଉଛନ୍ତି ! ତେବେ ଯାଉଛି ବାଟ ମୁହଁରେ ଅପେକ୍ଷା କରିବି ।

ଦୃଶ୍ୟ—ରାଜପ୍ରାସାଦ ।

[ ପରିଜନସହ ରାଜା ଓ ବିଦୂଷକର ପ୍ରବେଶ । ]

ରାଜା—(ସ୍ୱଗତ) ନାନା କାର୍ଯ୍ୟରେ ବ୍ୟସ୍ତ ଥାଇ କୌଣସି ପ୍ରକାରେ ଦିନଟା କଟାଇଲି । ବର୍ତ୍ତମାନ ଏ ଯୁଗଳ ଯାମିନୀ ଯିବ କପରି ?

କଞ୍ଚୁ—[ ପାର୍ଶ୍ୱରେ ] ଜୟ ଜୟ ମହାରାଜ, ମହାରାଜ—ଦେବୀ ଏହି କଥା ନିବେଦନ କରୁଛନ୍ତି ଯେ ମଣିପ୍ରାସାଦ ଉପରେ ଚାନ୍ଦ୍ର ଅତି ସୁନ୍ଦର ଦିଶୁଛି । ସେଠାରେ ମୁଁ ମହାରାଜାଙ୍କ ପାଖରେ ବସି ଚନ୍ଦ୍ରିଣୀ ରାତ୍ରି ଶୋଭା ଦେଖିବି ।

ରାଜା—ତେବେ ଦେବୀଙ୍କି ଜଣାଇବ ଯେ ତାଙ୍କର ଯେପରି ଇଚ୍ଛା—

କଞ୍ଚୁ—ଯେଉଁପରି । [ପ୍ରସ୍ଥାନ]

ରାଜା—ବୟସ୍ୟ, ଯଥାର୍ଥରେ କଣ ଦେବୀ ବ୍ରତ ନିମିତ୍ତ ଏହି ଅୟୋଜନ କରିଛନ୍ତି ?

ବିଦୂ—ମୋତେ ଲାଗେ ତେତେବେଳେ ଆପଣଙ୍କର ଅଦର ନ ପାଇ ପଛେ ତାଙ୍କ ମନରେ ଭାରି ଦୁଃଖ ହୋଇଛି । ସେହି ଦୋଷଟା ଛଡ଼ାଇବା ପାଇଁ ଏପରି ଗୋଟାଏ ଫିକର କରିଛନ୍ତି ।

ରାଜା—ଯଥାର୍ଥ କହିଲ । ମାନିନୀମାନେ ଆଗେ ପ୍ରଣାମ ଲଙ୍ଘନ କରି ପଶ୍ଚାତ୍ ପରେ ଅନୁତପ୍ତ ହୋଇ ନାନା ଅନୁନୟ ବିନୟ କରିଥାନ୍ତି । ହଉ, ବର୍ତ୍ତମାନ ପ୍ରାସାଦ ଉପରକୁ ବାଟ ଦେଖାଅ ।

ବିଦୂ—ଏଇବାଟେ ଆସନ୍ତୁ । ଏହି ଶୀତଳ ସ୍ଫଟିକ ପାବଚ୍ଛରେ ଉପରକୁ ବିଜେ କରନ୍ତୁ । ସନ୍ଧ୍ୟାବେଳେ ଏ ସ୍ଥାନଟି ବଡ଼ ସୁନ୍ଦର ଦିଶେ !

[ଯଥାକ୍ରମେ ଆରୋହଣାଭିନୟ]

ବିଦୂ—[ଦେଖି] ଅଜ ଟିକିଏ ଗଲେ ଚନ୍ଦ୍ର ସେଠାଇଁ ଉଇଁ ଆସିବ । ଅନ୍ଧାର କୁଅଡ଼େ ଚାଲି ଗଲାଣି । ପୂର୍ବ ଦିଗରେ ଅଳ୍ପ ଅଳ୍ପ ଦେଖା ଯାଉଛି ।

ରାଜା—ଠିକ୍ ଅନୁମାନ କରିଛ । ବର୍ତ୍ତମାନ ଉଦୟଗିରିଶିଖରରେ ଚନ୍ଦ୍ର ଅଛନ୍ତି । ଚନ୍ଦ୍ରିକା ଦ୍ୱାରା ଅନ୍ଧକାର ନଷ୍ଟ ହୋଇ ଯିବାରୁ ପୂର୍ବ ଆକାଶ ଆଲୋକିତ ହୋଇ ବଡ଼ ମନୋହର ହୋଇଛି ।

ବିଦୂ—ହାଃ ହାଃ ହାଃ, ହେଇଟିତ ଠିକ୍ ପାଚିଲେ ନାଲି ମୋହନ ପରି ଚନ୍ଦ୍ର ଉପରକୁ ଉଠିଲେଣି ?

ରାଜା—(ସସ୍ମିତେ) ସବୁ ସ୍ଥାନରେ ଔଦରିକର କେବଳ ଖାଦ୍ୟ ଉଦରପୂର୍ତ୍ତି କଥା !!!

(କୃତାଞ୍ଜଳିପୁଟେ ପ୍ରଣାମ ।)

କଟମ୍ମେଧଙ୍ଗେ ଯାତଃ ନମଃ ଶୀତରଶ୍ମେ

ଜନାନନ୍ଦକାରିନ୍ ନମୋଧ୍ୱାନ୍ତହାରିନ୍

ନମସ୍ତେ ଈଶାଙ୍କ ନମୋ ଲୋକବାନ୍ଧବ
ନମଃ ଶୂଲଚୂଡ଼ାମଣେ ଦିବ୍ୟରୂପ ॥

ବିଦୂ—ଦେଖନ୍ତୁ । ଆପଣଙ୍କ ପିତାମହ ବ୍ରାହ୍ମଣ ମୁଖରେ ବସିବାକୁ କହୁ-ଛନ୍ତି-ବସନ୍ତୁ । ମୁଁ ତେବେ କିଏ ଆସନରେ ବସିଯାଏଁ ?

ରାଜା—(ହସି, ପରିଜନବର୍ଗଙ୍କୁ ଚାହିଁ) ଏଣିକି ଚନ୍ଦ୍ରାଲୋକରେ ଦୀପ ଥିବା ନ ଥିବା ସମାନ । ତୁମ୍ଭେମାନେ ଏଥର ଯାଅ । ବିଶ୍ରାମ କରିବ ।

ପରିଜନବର୍ଗ—ଯେ ଆଜ୍ଞା, (ପ୍ରସ୍ଥାନ)

ରାଜା—(ଚନ୍ଦ୍ରଙ୍କୁ ଦେଖି ବିଦୂଷକ ପ୍ରତି) ବୟସ୍ୟ, ଅଉ ମୁହୂର୍ତ୍ତିକ ପରେ ଦେବୀଙ୍କର ଶୁଭାଗମନ ହେବ । ତାହା ହେଲେ ଏହି ଏକାନ୍ତରେ ତୁମ୍ଭ ଆଗରେ ମନ କଥା ସବୁ କହିବି ।

ବିଦୂ—କାହିଁ ଉର୍ବଶୀଙ୍କରତ ଆଉ ଦେଖା ନାହିଁ ? ତେବେକେ ତାଙ୍କର ଯେମିତି ହାବ ଭାବ ଜଣା ପଡୁଛି ସେଥିରୁ ମତେ ଅନୁମାନ ହେଉଛି ଆପଣ ଏହିକ୍ଷଣି ଏ ପ୍ରାଣଟାକୁଁ ଦିନାକେତେ ଆଶା ଡୋରରେ ବାନ୍ଧି ରଖି ପାରିବେ ।

ରାଜା—ତାହା ସତ, ମାତ୍ର ମୋହର ମନର ଆବେଗ ଏଣିକି ପ୍ରବଳ ହେଉଅଛି । ନଦୀ ସ୍ରୋତ ଯେପରି ବନ୍ଧୁର ଶିଳା ପଥରେ ବାଧା ପାଇ ନାନା ପ୍ରବାହ ଧାରଣ କରେ, ସେହିପରି ମୋହର କାମନା ମିଳନ ସୁଖରେ ବାଧା ପାଇ ଶତଗୁଣ ବର୍ଦ୍ଧିତ ହେଉଅଛି ।

ବିଦୂ—ଆପଣଙ୍କ ଦେହ ଆଗଠୁଁ ଅବଶ୍ୟ ଅଳପ ଶୁଖିଯାଇଚି । ତେବେକେ କେଡ଼େ ସୁନ୍ଦର ଦିଶୁଚି । ଏଥିରୁ ମତେ ଜଣାପଡୁଚି ନିଶ୍ଚେ ଅପ୍ସରା ସଙ୍ଗମ ହେବ ।

ରାଜା—(ଶୁଭସୂଚନା କରି) ପ୍ରିୟ ବୟସ୍ୟ, ତୁମ୍ଭେ ଏହି ଆଶାପ୍ରଦ ବାକ୍ୟ ଦ୍ୱାରା ଏ ହତାଶ ବନ୍ଧୁକୁ ଆଶ୍ୱାସିତ କଲ । ସେଥି ସଙ୍ଗେ ପୁଣି ଦକ୍ଷିଣ ବାହୁ ସ୍ପନ୍ଦନ ହେବାରୁ ତତୋଽଧିକ ଆଶ୍ୱସ୍ତ ହେଲି ।

ବିଦୂ—ବ୍ରାହ୍ମଣ ବାକ୍ୟ କେବେ ଅନ୍ୟଥା ହୁଏ ?

ରାଜା—[ ଅଶ୍ୱାନ୍ୱିତ ଭାବରେ ଅବସ୍ଥାନ । ]

[ଶୂନ୍ୟ ମାର୍ଗରେ ଅଭିସାରିକା ବେଶରେ ଉର୍ବଶୀ
ଓ ଚିତ୍ରଲେଖାର ପ୍ରବେଶ । ]

ଉର୍ବ—[ନିଜ ଦେହକୁ ଚାହିଁ ] ଚିତ୍ର, ମଣିମୁକ୍ତା ଖଚିତ ଏଇ ନୀଳାମ୍ବର ବେଶ ମତେ ବଡ଼ ଭଲ ଲାଗେ ।

ଚିତ୍ର—ତୁମକୁ କଣ-ମତେ ଏତେ ଭଲ ଲାଗୁଚି ଯେ କଣ କହି ପ୍ରଶଂସା କରିବି-ଦିଶୁନାହିଁ । ଏଇ କଥା ବିଚାର କରୁଥିଲି ମୁଁ ଯେବେ ପୁରୁରବା ହୋଇଥାନ୍ତି ! ତେବେ—

ଉର୍ବ—ଚିତ୍ର, ମୁଁତ ଆଉ ପାରିବି ନାହିଁ ! ତୁମେ ଯାଅ ଚଞ୍ଚଳ ତାଙ୍କୁ ଆଣିବି-ନଇଲେ ତାଙ୍କ ରାଜ୍ୟକୁ ଦେନା କରି ଚାଲ ।

ଚିତ୍ର—ସଖି, ଏଇ ପରା ତୁମ ପ୍ରାଣନାଥଙ୍କର ରାଜ୍ୟ ! ଦେଖୁ ନାହିଁ ଖିତରେ କଇଳାସ ପର୍ବତର ଛାଇ ପଡ଼ିଲା ପରି ଯମୁନା ଉପରେ ଏହାର କପର ଛାଇଁ ପଡ଼ିଚି ।

ଉର୍ବ—ତେବେ ଧ୍ୟାନ ବଳରେ କହିଲ ଭଲା ମୋର ସେଇ ଚିତ୍ତଚୋର ଏହିକ୍ଷଣି କେଉଁଠି ଅଛନ୍ତି-ଅଉ କଣ କରୁଛନ୍ତି ?

ଚିତ୍ର—[ସ୍ୱଗତ] ଅଚ୍ଛା ହଉ, ଅଗେ ଟିକିଏ କଉତୁକ କରେଁ ! [ପ୍ରକାଶ୍ୟେ] ସଖି, ସେତ ଏବେ ମନ ଜାଣି ସୁନ୍ଦରୀଟିଏ ପାଇଛନ୍ତି-ଅଉ ତାଙ୍କର କିଛି ଭାବନା ନାହିଁ ।

ଉର୍ବ—ନାଇଁ-ନାଇଁ । ମତେ ଯ୍ୱା କେବେ ସତ ଅସୁ ନାହିଁ । ଚିତ୍ର, କଣ ବୁଝାଏ ତୁମେ ମନକୁ କହି ଯାଉଚ । ସୁନ୍ଦରୀ ପାଇବା ଅଚ-ରୁତ ସେ ମୋ ମନକୁ ଚୋରିଇ ନେଇଛନ୍ତି !!

ଚିତ୍ର—(ଚାହିଁ) ହେଇଟି, ମଣିଭବନ ଉପରେ ମହାରାଜ ବସିଛନ୍ତି । ପାଖରେ ତାଙ୍କ ସହଚର । ଚାଲ ତେବେ ପାଖକୁ ଯିବା ।

( ତଥାକରଣ । )

ରାଜା—ବୟସ୍ୟ, ରାତି ହେଲେ ତାହାଙ୍କ କଥା ଅଧିକ ଜଣା ଯାଏ ।

ଉର୍ବ୍ବ—ଏଇ ଟୁପ୍ ଟୁପ୍ କଥା ଶୁଣି ମୋ ବୁକୁ କାହିଁ ଦୁପ୍ ଦୁପ୍ ପଡ଼ୁଚି !
ତେବେ ଅନ୍ତରାଳରେ ରହି ଶୁଣିମା-ସନ୍ଦେହ ତୁଟି ଯିବ ।

ଚିତ୍ର—ହଉ—, ଯେମିତି ଇଚ୍ଛା ।

ବିଦୂ—ସ୍ୱାମୀ, ଆଗ ଏହିକ୍ଷଣି ଚନ୍ଦ୍ରଙ୍କର ଅମୃତ ବୃଷ୍ଟି ଭୋଗ କରନ୍ତୁ ।

ରାଜା—ବୟସ୍ୟ, ଏଥିରେ ବରଂ କାମଜ୍ୱର ଅଧିକ ତେଜି ଉଠିବ ! ତାହା ଏଥିରେ ଶାନ୍ତ ହେବ ନାହିଁକି ପୁଷ୍ପ ପଲ୍ଲବ ଶଯ୍ୟାରେ ଶାନ୍ତ ହେବ ନାହିଁ । ସର୍ବାଙ୍ଗରେ ଚନ୍ଦନ ଲେପନ କଲେ ବି ହେବ ନାହିଁ । କେବଳ ସେଇ ସୁରସୁନ୍ଦରୀଙ୍କି ପାଇଲେ ଅଥବା ଏକାନ୍ତରେ ତାହାର କଥା ସ୍ମରଣ କଲେ ଅବା ଏ ଅନ୍ତର୍ବେଦନା ପ୍ରଶମିତ ହେବ !

ଉର୍ବ୍ବ—ରେମନ, ତୁ ମତେ ଛାଡ଼ି ଯା ତାଙ୍କଠି ମଜିଚୁ ତାହାର ଏଇ ଫଳ ।

ବିଦୂ—ହଁ-ହଁ ମୋର ବି ସେମିତି—ଯେତେବେଳେ ପାଟଲି ଅମ୍ଭ କି ଖଜୁରି କିଛି ନ ପାଏଁ ସେତେବେଳେ ଖାଲି ତାହାର କଥା ଭାବି କରି ମନବୋଧ କରେଁ ।

ରାଜା—କିନ୍ତୁ ତୁମେ ତାହା ପାଇ ଥାଅ ।

ବିଦୂ—ଅପଣ ବି ଆଜି ଟିକିଏ ଗଲେ ପାଇବେ ।

ରାଜା—ବୟସ୍ୟ, ମୁଁ ମଧ୍ୟ ସେହିପରି ଭାବନା କରୁଛି ।

ଚିତ୍ର—ଶୁଣ ଗୋ ଶୁଣ ।

ବିଦୂ—କଣ ଭାବନା କରୁଛନ୍ତି ?

ରାଜା—ଦୈତ୍ୟ ଯୁଦ୍ଧରୁ ଉଦ୍ଧାରି ରଥରେ ଆସୁଥିବା ବେଳେ ତାହାଙ୍କ ଶିରୀଷ କୋମଳ ବାହୁରେ ମୋହର ଏ ବାହୁ ଲାଗି ଯାଇଥିଲା । ମୋ ମତରେ ଏଇ ଅଙ୍ଗଟି କୃତାର୍ଥ ହୋଇଅଛି । ଆଉ ସବୁତକ ପୃଥିବୀର ଭାର କେବଳ ।

ଉର୍ବ—ତେବେ ମୁଁ ଅଞ୍ଜ ଉତ୍ସବ କରୁଚି କାହିଁ ? (ସହସା ପାର୍ଶ୍ୱକୁ ଯାଇ) ସଖି, ମୁଁ ଅଳ୍ପକୁ ଅସିଲଣି-ତେବେବେଳେ ମହାରାଜ କାହିଁକି ମୌନୀ ହୋଇ ବସିଛନ୍ତି ? (ସମ୍ମୁଖରେ ଅବସ୍ଥାନ)

ଚନ୍ଦ୍ର—(ସସ୍ମିତେ) ଗୋଚଅଛୁ ! ଉପରେ ପରଦା ଅଛି ପରା ଦେଖିବେ କେମିତି ?

ନେପଥ୍ୟେ—ଏ ହାଟେ ଏ ବାଟେ ।] (ସମସ୍ତଙ୍କର ଶ୍ରବଣାଭିନୟ ।)

ବଦୂ—ସଂଗଲ ! ସଗଲ ! ଆଟଗ୍ରଣୀ ଅସି ପହଞ୍ଚି ଗଲେଣି ଆପଣ ଏଥର ମୁହଁରେ ତୁଳା ଦେଇ ବସନ୍ତୁ ।

ରାଜା—ତୁମ୍ଭେ ମଧ୍ୟ ସାବଧାନ ହୋଇ ବସ ।

ଉର୍ବ—ସଖି, ଏଠାଇଁ ଏବେ କଣ କରିବା ?

ଚନ୍ଦ୍ର – ଏତେ ତରତର କାହିଁ ? ତୁମକୁ ତ କେଏ ଦେଖି ପକାଉ ନାହିଁ ? ରାଣୀ ଗୋଟିଏ କଣ୍ଠ ବ୍ରତ କଲାପରି ଜଣା ପଡୁଚି । ସେ ଏଠାରେ କେବେ ବହୁତ ବେଳଯାଏ ରହିବେ ନାହିଁ ।

(ଦେବୀ ଏବଂ ଅର୍ଘ୍ୟସ୍ଥାଳୀ ସହିତ ଦାସୀର ପ୍ରବେଶ ।)

ଦେବୀ – ( ଚନ୍ଦ୍ରଙ୍କୁ ଦେଖି ) ଆହା ! ରୋହିଣୀଯୋଗ ହେବାରୁ ଚନ୍ଦ୍ର ଆଜି ଅଧିକ ସୁନ୍ଦର ଦିଶୁଛନ୍ତି !

ଦାସୀ – ମହାରାଜା ସେଇମିତି ମନ୍ତ୍ରୀମାଙ୍କ ସାଙ୍ଗରେ ରହିଲେ ସୁନ୍ଦର ଦିଶିବେ । [ପରିକ୍ରମଣ]

ବଦୂ – [ଦେଖି] ମହାରାଜ, ମତେ ଲାଗେ ଦେବୀ ସ୍ୱସ୍ତି ଦକ୍ଷିଣା ଦବାକୁ ଅସିଛନ୍ତି । ଅବା ବ୍ରତଟା ଉଣା ହୋଇ ଯିବାରୁ ଚନ୍ଦ୍ର ଚନ୍ଦାପନା ବାହାନାରେ ସେଇ ଦୋଷଟା ଛଡ଼ାଇବାକୁ ଅସିଥିବେ । ଯାହା-ହଉ ଦେବୀ ଆଜି ବଡ଼ ସୁପ୍ରସନ୍ନା ଦେଖା ପଡୁଛନ୍ତି ।

ରାଜା – [ସସ୍ମିତେ] ଦୁଇ କଥାରେ ଅସିଛନ୍ତି । ତେବେ ଶେଷରେ ଯାହା କହିଲ ତାହା ମଧ୍ୟ ମୋହକର କଥା ! ଦେଖ, ଏଣେ ଶୁକ୍ଳବସ୍ତ୍ର ପରିଧାନକୁ ଏଣେ ମଙ୍ଗଳ ଅଳଙ୍କାର ଧାରଣ । ବ୍ରତ-

ନମିଉ ପୁଣି କୁନ୍ତଳ ଦୂର୍ବାଦଳ ଲମ୍ବିତ, ମନୋଜ୍ଞଭଙ୍ଗି ବନଫୁଲଭୂଷିତ
ଅହା, କ ପ୍ରସନ୍ନ ମୂର୍ତ୍ତି ଅଜି ! ! !

ଦେବୀ – [ନିକଟକୁ ଯାଇ] ପ୍ରଭୁ, ଦାସୀ—ଜେ' ଜେ' ମହାରାଜ ।

ବିଦୂ – ମଙ୍ଗଳ ହଉ ।

ରାଜା – ଦେବୀ, ଶୁଭାଗମନ କର [ ହସ୍ତ ଧରି ବସାଇବା ]

ଉର୍ବ – ହଁ, ଦେବୀ ପଦର ଏକା ଯୋଗ୍ୟ ଏ ! ଠେକରେ ଏତ ଶଚୀ-
ଦେବୀଙ୍କଠୁ ଭଲେହେଁ ଊଣା ନୁହନ୍ତି ।

ଚିତ୍ର – ସହି, ଏମିତ କହିବାକୁ ପୁଣି ତୁମର ଆଉ ମୁହଁ ଅଛି ।

ଦେବୀ – ପ୍ରଭୁ, ମୁଁ ତୁମ ଅଗରେ ଅଜି ଗୋଟିଏ ବ୍ରତ ଉଜେଁଇବି ।
ଟିକିଏ କଷ୍ଟ ପାଇ ମୋର ଏହି ଅନୁରୋଧକୁ—

ରାଜା – ଦେଖ ବୟସ୍ୟ, ଦେବୀ ଏ ଅନୁଗ୍ରହକୁ ପୁଣି ଅନୁରୋଧ ବୋଲି
କହୁଛନ୍ତି ।

ବିଦୂ – ଏ ସ୍ୱସ୍ତି ବାଚନଙ୍କ ପ୍ରତି ଦେବୀଙ୍କର ସେମିତି ବହୁତ ଅନୁରୋଧ
ହଉ ।

ରାଜା—ଏ ବ୍ରତର ନାମ କଣ ? ଦେବୀ—(ନିପୁଣିକା ପ୍ରତି ଦୃଷ୍ଟିପାତ)

ଦାସୀ—ମଣିମା, ଏ ବ୍ରତର ନାଁ 'ପତିପ୍ରୀତି'।

ରାଜା—(ଦେବୀଙ୍କ ପ୍ରତି) ସୁନ୍ଦରି, ଏ ସାମାନ୍ୟ କଥା ଲାଗି ଏପରି
ଅସାମାନ୍ୟ ଶିରୀଷକୋମଳ ଅଙ୍ଗକୁ ବୃଥା କଷ୍ଟ ଦେଉଛ ! ଯେ
ତୁମ୍ଭର ଅନୁଗ୍ରହ ଲାଗି ସର୍ବଦା ବ୍ୟାକୁଳ, ସେ ଦାସକୁ ପୁଣି
ତୁମେ ପ୍ରୀତି କରାଇବ ?

ଉର୍ବ—(ସସ୍ମିତେ) ମହାରାଜ ଦେବୀଙ୍କୁ ତ ଖୁବ ମାନ୍ୟ କରନ୍ତି !

ଚିତ୍ର—ଅଗୋ ଜାଣିବ କଣ ? ନାଗରଯାକ ଏମିତି ବାହାରେ ମିଠା
କଥା କହନ୍ତି—ଭିତରେ ପଛକେ ଅଉ ଅଡେ ମନ ଥାଉ ।

ଦେବୀ – ଏ ବ୍ରତର ଏତେ ପ୍ରଭାବ ଯେ, ମହାରାଜା ମୂଳ କଥାକୁ ଭୁଲି
ଯାଇ ମୋତେ ପୁଣି ଏପରି କହୁଛନ୍ତି !

ବିଦୂ—ସେ କଥା ଥାଉ, ଆଗେ ଏ ସହଚରଙ୍କ କଥା ଶୁଣିବା ଉଚିତ ହେଉଛି ।

ଦେବୀ—ନିପୁଣିକା, ଅର୍ଘ୍ୟ ଉପହାର ସବୁ ଘେନଆ-ମୁଁ ଏହିଠାରେ ଚନ୍ଦ୍ର-ପୂଜା କରିବି ।

ଦାସୀ—ମଣିମା, ହେଉଛି ଅର୍ଘ୍ୟ-ଥାଳୀ !

ଦେବୀ—ପାଖକୁ ଆଣ (ପୁଷ୍ପଦ୍ୱାରା ପୂଜାକରି) ହେଉଛି, ଏ ଅର୍ଘ୍ୟ ମିଠାଇ ପିଠାଇ ସବୁ ନେଇ ଏହାଙ୍କୁ ଅର୍ଥାତ ସେ ବୁଢା ବ୍ରାହ୍ମଣଙ୍କୁ ଦେ—

ଦାସୀ— ହଉ, ଗୋସେଇଁ, ଏତକ ତୁମର ।

ବିଦୂ—(ମିଷ୍ଟାନ୍ନପାତ୍ର ଧରି) ପାଟରାଣୀଙ୍କର ମଙ୍ଗଳ ହେଉ, ଆଉ ଏ ବ୍ରତରେ ବହୁତ ଫଳପ୍ରାପ୍ତି ହେଉ ।

ଦାସୀ—ବୁଢା ଗୋସେଇଁ, ତୁମର ଜୟ ।

କଞ୍ଚୁ—(ଗ୍ରହଣ କରି) ଦେବୀଙ୍କର ସୁକୃତବୃଦ୍ଧି ହେଉ ।

ଦେବୀ—ମହାରାଜ, ଏଠାକୁ ଟିକିଏ,

ରାଜା—ହଉ, ଆସିଲି ।

ଦେବୀ—(ରାଜାଙ୍କୁ ପୂଜାକରି କୃତାଞ୍ଜଳିପୁଟେ ପ୍ରଣାମ) ବର୍ତ୍ତମାନ ମୁଁ ଏହି ରୋହିଣୀ ଚନ୍ଦ୍ରଙ୍କୁ ସାକ୍ଷୀ କରି ପ୍ରାଣନାଥଙ୍କ ପରିତୋଷ ନିମନ୍ତେ ଏଇ ପ୍ରତିଜ୍ଞା କରୁଛି ଯେ, ଆଜିଠାରୁ ସେ ଯେଉଁ ସ୍ତ୍ରୀକି କାମନା କରିବେ ଅବା ଯେଉଁ ସ୍ତ୍ରୀ ତାଙ୍କୁ କାମନା କରିବ, ତାକୁ କେବେ ମୁଁ ପ୍ରତିକୂଳ ହେବ ନାହିଁ ।

ଉର୍ବ—ହେ ଏ କି କଥା ! ସ୍ତ୍ରୀ କେମିତି କହୁଚନ୍ତି ! ଯା ହେଉ ଏଥିରେ ଏକା ମୋ ମନରୁ ସନ୍ଦେହ ତୁଟି ଗଲା ।

ଚିତ୍ର—ସଖି, ପତିବ୍ରତାଙ୍କର ଯେତେବେଳେ ଅନୁମତି ହୋଇଲାଣି ସେତେ-ବେଳେ ନିଶ୍ଚେ ତୁମର ପୂର୍ଣ୍ଣମିଳନ ହେବ ।

ବିଦୂ—(ଜନାନ୍ତିକେ) ଶିକାର ପଳେଇ ଗଲେ ହାତଖଣ୍ଡିଆ କହେ-ଗଲା ଭଲ ହେଲା ! ମୋର ଧରମ ହବ । (ପ୍ରକାଶ୍ୟେ) ଦେବି !

ପ୍ରାଣନାଥ ଯେ ମୁଗ୍ଧ ମୁଗ୍ଧ ହୋଇ ରହିଲେଣି । ସ୍ନେହ ଭଲ ଯାଉଚନ୍ତି ପରା !

ଦେବୀ—ମୂର୍ଖ ! ମୁଁ ନିଜ ସୁଖ ଛାଡ଼ି ତାଙ୍କର ସୁଖ ପାଇଁ ଚେଷ୍ଟାକଲି ଏଥିରୁ ଭଲ ପାଏଁ କି ନା ବୁଝ ।

ରାଜା—ଦେବ, ଅନ୍ୟଙ୍କୁ ଅର୍ପଣ କର ବା କ୍ରୀତଦାସ କର–ଯାହା ଇଚ୍ଛା ତାହାକର । ମାତ୍ର ତୁମେ ଯେଉଁଭଳି ମୋତେ ଭାବୁଛ ମୁଁ ପ୍ରକୃତରେ ସେପରି ନୁହେଁ ।

ଦେବୀ—ହଉ, ତୁମେ ହୁଅ ବା ନହୁଅ ମୁଁ ମୋହର ବ୍ରତବିଧି ପାଳିଲି । ଏଣିକି ଅଉ ମୋହର କଣ ଅଛି–ଆ–ଲୋ ଏଥର ଯିବା ।

ରାଜା—(ଉଠି) ପ୍ରିୟେ, ମୋତେ ଯେବେ ଛାଡ଼ି ଚାଲିଯିବ ତାହା–ହେଲେ ଅଉ ପ୍ରୀତି କଣ ହେଲା ?

ଦେବୀ—ପ୍ରଭୁ, ମୁଁ କେବେ ନିୟମ ଭଙ୍ଗ କରିବି ନାହିଁ । ତାହା କଲେ ବ୍ରତରେ ବିଘ୍ନ ହେବ । (ଦାସୀସହ ପ୍ରସ୍ଥାନ)

ଉର୍ବ—ତଥ, ମହାରାଜ ଦେବୀଙ୍କି ବଡ ଦେଖି ପାରନ୍ତି । ତେବେକେ ମୁଁତ ତାଙ୍କଠୁଁ ମନକୁ ଫେରାଇ ଆଣି ପାରୁ ନାହିଁ ।

ଚିତ୍ର—ପୂର୍ବ ଅଶା ଥାଉ ଥାଉ କାହିଁ ଫେରାଇ ଅଣିବ–କହିଲ ଭଲା ?

ରାଜା—(ଅସନକୁ ଅସି) ବୟସ୍ୟ, ଦେବୀ ପୁରକୁ ଚାଲି ଗଲେଣି ।

ବିଦୂ—ଏଥର କଣ ବାଧାଧ କଥା କହିବେ କହନ୍ତୁ । ବୈଦ୍ୟ ଯେମିତି ଅସାଧ ରୋଗୀକି ଚଞ୍ଚଳ ଛାଡ଼ି ଚାଲିଯାଏ, ସେମିତି ଦେବୀ ଆଜି ଅପଣଙ୍କୁ ଛାଡ଼ି ଚାଲିଗଲେ ।

ରାଜା—ଅଉ ଉର୍ବଶୀ—

ଉର୍ବ—(ସ୍ୱଗତ) ଆଜି କୃତାର୍ଥ ହବ ।

ରାଜା—ଆହା ! ଏହି ସମୟରେ ଯେବେ ସେ ସୁନ୍ଦରୀ ନୂପୁରଧ୍ୱନି ନକରି ପଛଆଡୁ ଧୀରେ ଧୀରେ ଅସି ସେଇ କୋମଳକରକମଳରେ ମୋହର ଚକ୍ଷୁ ମୁଦ୍ରଣ କରନ୍ତା ଅବା ଏହି ପ୍ରାସାଦ ଉପରକୁ

ଏହିକ୍ଷଣି ଶୁଭାଗମନ କରନ୍ତା, ଅଉ ଲଜ୍ଜା ଭୟ ଦେଖିଲେ ସେହି ସହଚରୀ ପୁଣି ମୌନକଣ୍ଠକୁ ଆକର୍ଷି ଆଣନ୍ତା !!! ତେବେ—

ଚିତ୍ର—ସହି, ମନକାମନାଲତା ଏଥର ଫୁଲିଅ ।

ଉର୍ବ—(ସଭୟେ) ଟିକଏ ଥାଅ, କଉତୁକ କରେଁ ! (ପଛଆଡୁ ଆସି ଚକ୍ଷୁ ମୁଦ୍ରଣ ଏବଂ ଚିତ୍ର ଲେଖାର ବଦୂଷକ ପ୍ରତି ସଙ୍କେତ ।)

ରାଜା—(ସ୍ପର୍ଶ ଅନୁଭବ କରି) ବୟସ୍ୟ, ଏ କଣ ସେଇ ନାରାୟଣ ମୁନିଙ୍କ କନ୍ୟା ମୋହର ପ୍ରାଣସଖୀର ସ୍ପର୍ଶ ?

ବିଦୂ—କେମିତି ଜାଣିଲେ ?

ରାଜା—ଜାଣିବାକୁ ଅଉ ଅଛି କଣ ? ଏ ସନ୍ତାପିତ ଦେହରେ ଅଉ କାହାର କରସ୍ପର୍ଶ ଏତେ ସୁଖକର ବୋଧ ହେବ । ସୂର୍ଯ୍ୟକିରଣରେ କାହିଁ କୁମୁଦ ପ୍ରସ୍ଫୁଟିତ ହେଲାଣି ?

ଉର୍ବ—ହେ, ମୋ ହାତ କେମିତି ଝିମି ଝିମି ହୋଇ ଯାଉଚି, ଅଉ ଆଣି ହେଉ ନାହିଁ ।

(ହାତ କାଢି ଲଜ୍ଜା ଭୟ ମୁଦ୍ରିତନେତ୍ରରେ ସମ୍ମୁଖଗମନ) ମହାରାଜ,

ରାଜା—ସୁନ୍ଦରୀ ଶୁଭାଗମନ କର (ଏକତ୍ର ଉପବେଶନ)

ଚିତ୍ର—ସୁଖରେ ଅଛନ୍ତି ? ରାଜା—ତାହାତ ଜାଣି ପାରୁଥିବେ ?

ଉର୍ବ—ଚିତ୍ର, ଦେବୀ ମହାରାଜାଙ୍କୁ ଦାନ କରି ଯାଇଅଛନ୍ତି ବୋଲି ମୁଁ ପ୍ରାଣ ସଙ୍ଗିନୀ ପରି ଶ୍ରୀଅଙ୍ଗକୁ ଛୁଇଁଲି । ବଲେ ଅସି ଛୁଇଁଲି ବୋଲି କିଛି ବିଗିଡ଼ିବେ ନାହିଁ ?

ବିଦୂ—ଏ କଣ ? ଏଇଠିଁ ଏଇଠିଁ ଏବେ ସୂର୍ଯ୍ୟ ଅସ୍ତ ହୋଇ ଗଲେ ?

ରାଜା—(ଉର୍ବଶୀଙ୍କ ପ୍ରତି) ସୁନ୍ଦରି, ଦେବୀଙ୍କ ଅନୁମତି ଯୋଗୁଁ ଯେବେ ମୋହର ଦେହ ସ୍ପର୍ଶ କରି ଥାଅ, ତାହା ହେଲେ କାହା ଅନୁମତରେ ଏଥି ପୂର୍ବରୁ ମୋ ହୃଦୟକୁ ହରଣ କରିଥିଲ ?

ଚିତ୍ର—ସେ ତ ଏହିକ୍ଷଣି ନୃପ, ମୋର ଗୋଟିଏ ଗୁହାରି ଅଛି ଶୁଣନ୍ତୁ ।

ରାଜା—ଭଲ କରି ଶୁଣୁଛି, କହନ୍ତୁ—

ଚିତ୍ର—ଏ ବସନ୍ତ ଯାଉ ଗ୍ରୀଷ୍ମ ଦିନ ଅସିଲେ ମୁଁ ଶରତ ଚନ୍ଦ୍ରଦେବଙ୍କୁ ପୂଜା କରିବାକୁ ଯିବି । ମୁଁ ନ ଥିବାବେଳେ ଏ ଯେମିତି ସ୍ୱର୍ଗକୁ ଯିବାକୁ ମନ ନ କରନ୍ତି ସେଇ ପରି ଉପାୟ କରିଥିବ ।

ବିଦୂ—ସ୍ୱର୍ଗରେ ଏମିତି କଣ ଅଛି ଯେ, ସେ କଥା ମନେ ପଡ଼ିବ । ନା—ଭଲ ଖାଇବାକୁ—ନା ଭଲ ପିଇବାକୁ ! ସବୁବେଳେ ଗୀତ ମିଠାଇର ଝୁମ୍ପୁଝୁମ୍ପି କରି ପେଟ ଭରୁଥିବ ।

ରାଜା—ସୁନ୍ଦରୀ, ସ୍ୱର୍ଗ ସୁଖର ଉପମା ନାହିଁ । ସେଥିରୁ କିଏ ବା ଛଡ଼ାଇ ପାରିବ ? ତେବେ ଏତିକି କହି ପାରେଁ ଯେ—ଏ ଦାସର ଅନ୍ୟଠି ତୃପ୍ତି ନାହିଁ ।

ଚିତ୍ର—ବଡ ଅନୁଗ୍ରହ ଆପଣଙ୍କର—ସଖି, ମୁଁ ଏଥର ଯାଉଛି ! ନିଶ୍ଚିନ୍ତ ହୋଇ ରହି ଥାଅ—

ଉର୍ବ — [ସଖୀଙ୍କୁ ଅଲିଙ୍ଗନ କରି] ସଖି, ମତେ ପାସୋରିବ ନାହିଁଟି ?

ଚିତ୍ର — [ସସ୍ମିତେ] ଓଲଟା କଥା ! ପ୍ରାଣନାଥଙ୍କ ସଙ୍ଗେ ଯେତେବେଳେ ତୁମର ଭେଟ ହେଲାଣି, ଏଣିକି ମୁଁ ସିନା ତା ମାଗି ନେବି ।

[ ରାଜାଙ୍କୁ ପ୍ରଣାମ ଓ ପ୍ରସ୍ଥାନ । ]

ବିଦୂ — ଅଜି ବଡ଼ ଭାଗ୍ୟ—ଅପଣଙ୍କ ମନବାଞ୍ଛା ପୂର୍ଣ୍ଣ ହେଲା । ଏଣିକି ଖୁବ୍ ଅମୋଦ କରନ୍ତୁ ।

ରାଜା — ବୟସ୍ୟ, ଆଜି ସମ୍ପୂର୍ଣ୍ଣ ମନୋରଥସିଦ୍ଧି ହେଲା ! ଏ ବିଶାଳ ସାମ୍ରାଜ୍ୟର ଅଧିପତ୍ୟ କରି, ଅନେକ ପ୍ରତାପଶାଳୀ ରାଜନ୍ୟଗଣଙ୍କୁ ପଦାନତ କରି ଯେତେ କୃତାର୍ଥ ହୋଇ ନାହିଁ, ଅଜି ଏ ସୁର ସୁନ୍ଦରୀ ଚରଣତଳେ ଦାସ ହୋଇ ତତୋଽଧିକ କୃତାର୍ଥ ହେଲି ।

ଉର୍ବ — ଏଥି ଉପରକୁ କହିବାକୁ ଅଉ ମୋର ବଳ ନାହିଁ ।

ରାଜା — (ଉର୍ବଶୀଙ୍କ ହସ୍ତ ଧରି) କି ଆଶ୍ଚର୍ଯ୍ୟ ! ଏହି ସ୍ପର୍ଶ ସଙ୍ଗେ ସଙ୍ଗେ ସବୁ ଯେ ସୁଖକର ହୋଇଗଲା ! ସୁନ୍ଦରି ! ଯେଉଁ ଚନ୍ଦ୍ର କିରଣ

ଏଣୁପୂର୍ବେ ଜାମ୍ବୁନଦପତ୍ର ଅସହ୍ୟ ବୋଧ ହେଉଥିଲା, ତାହା ଅଜି ତବ ଅଙ୍ଗସ୍ପର୍ଶରେ କୁସୁମତୁଲ୍ୟ ବୋଧ ହେଉଅଛି ।

ଉର୍ବ—ଏ ଦାସୀ କଳଙ୍କ କରି ବହୁତ ଅପରାଧ କରିଛି ।

ରାଜା—ନାହିଁ ନାହିଁ—ସୁନ୍ଦରୀ ! ତୁମ୍ଭ କି କଥା ? ଯାହା ଦୁଃଖ, ତାହା ଅବଶେଷରେ ସୁଖରେ ପରିଣତ ହୁଏ । ଯେ ଅତପରେ ସନ୍ତାପିତ ହୋଇଥାଏ, ତାହାର ପକ୍ଷରେ ପିନା ବୃକ୍ଷଛାୟା ଅଧିକ ସୁଖକର ହୁଏ ।

ବିଦୂ—ଦେଖନ୍ତୁ । ଚନ୍ଦ୍ରକିରଣରେ ବହୁତ ସମୟ ବୈଠକ ହେଲାଣି ବର୍ତ୍ତମାନ ଅନ୍ତଃପୁରକୁ ଯିବାବେଳ ହେଲା ।

ରାଜା—ହଉ, ତାହା ହେଲେ ତୁମେ ସଖୀଙ୍କି ବାଟ ଦେଖାଇ କରି ନିଅ ।

ବିଦୂ—ହଉ, ଏଇବାଟେ ଅସନ୍ତୁ ।

ରାଜା—ସୁନ୍ଦରୀ, ବର୍ତ୍ତମାନ ଏତିକି ପ୍ରାର୍ଥନା, ଉର୍ବ—କଣ କହନ୍ତୁ ।

ରାଜା—ମନୋରଥ ପୂର୍ଣ୍ଣ ନହେବା ଯାଏ ଏହି ବିଯାମା ମୋହ ପ୍ରତି ଶତଯାମା ପ୍ରାୟ ବୋଧ ହେଉଥିଲା, ଅଜି ତୁମ୍ଭର ମିଳନରେ ଯଦି ସେହିପରି ହୁଏ, ତାହା ହେଲେ କୃତାର୍ଥ ହେବି । (ପ୍ରସ୍ଥାନ ।)

---

## ଚତୁର୍ଥ ଅଙ୍କ ।

ନେପଥ୍ୟେ—ସହଜନ୍ୟା ଓ ଚିତ୍ରଲେଖାର ରଙ୍ଗପ୍ରବେଶସୂଚକଗାନ ।

ବେହାଗ—ଝୁଲା ।

ଜଳିଲେଣି ଚନ୍ଦ୍ର, ଏହି ଦେଖ ପୂର୍ବ ଆକାଶେ ।
ଜାସାରେ କମଳବନ ହର୍ଷ ଗଲେ ହାଇସେ । ୦ ।
ପ୍ରିୟ ସଖୀ ବିରହରେ କମଳେ ଅଛି ଜଳରେ
ସଖୀ ସଙ୍ଗେ ଚକହଂସୀ, ସରସୀରେ ବରଷେ । ୧ ।
ନାହିଁ ସୁଖ ଲେଶ ସାର ଛଡ଼ିବେ ଦଶାଟିଏର
ମନୋହର ପଦ୍ମବନେ; ହରଷରେ ନ ବସେ । ୨ ।

[ବିମଳସ୍ଥଳବରେ ଉଭୟଙ୍କର ପ୍ରବେଶ ।]

ଚିତ୍ର—( ସୁରଅଡ଼କୁ ଚାହିଁ)—କରୁଣ ଗୀତସ୍ୱରେ ।

ଦେଖିଲି ସରୋବରରେ ହଂସୀ ବେଙ୍କ ଶବ୍ଦରେ
ପ୍ରେମେ ବନ୍ଧା ପରସ୍ପର,
ଲୋଚନ ଅନ୍ତରଲେ ଝରେ ନେତ୍ର ଯୁଗଳେ
ଚନ୍ଦ୍ରବଦନେ କୃଶତର । ୧ ।

ସହ—(ଚିତ୍ରଲେଖାକୁ ଚାହିଁ ) ସହି, ଆଜି ତୁମ ମୁହଁ କାହିଁ ମଉଳିଲା ଫୁଲପରି ଶୁଖିଲା ଦିଶୁଚି ? ଜଣା ଯାଉଚି ମନ ଭଲ ନାହିଁ । କାହିଁକି ଦୁଃଖ କହିଲ—ମୁଁ ହେଲେ ତୁମ ସାଙ୍ଗରେ ଜଣେ ହୁଅନ୍ତି ।

ଚିତ୍ର—ସହି, ଉର୍ବଶୀଙ୍କି ଛାଡ଼ି ଦେଇ ଅପସରୀଙ୍କ ପାଳି ଅନୁକ୍ରମେ ଆଜି ଧର୍ମ ଦେବତାଙ୍କୁ ପୂଜା କରିବାକୁ ଆସିଚି । ଉର୍ବଶୀ ନ ଥାଇଁ ବର୍ଷାଦିନ ଅସି ହୋଇଅଛି । ସେଇଥିପାଇଁ ମୋ ମନ କାହିଁ ଥୟ ହଉ ନାହିଁ ।

ସହ—ସହି, ତୁମ ଦୁହିଙ୍କ ମନ ଯେମିତି ମିଳେ ତା ମୁଁ ଜାଣିଚି । ହଁ—ସେଇଠୁଁ—

ଚିତ୍ର—ଏବେ ସେ କେମିତି ଅଛନ୍ତି ସେଇ କଥା ଧ୍ୟାନରେ ବୁଝୁଥିଲି । ଦେଖିଲି ଯେ ତାଙ୍କୁ ବିପତ୍ତି ପଡ଼ିଚି ।

ସହ—କି ବିପତ୍ତି ଗୋ !

ଚିତ୍ର—( କରୁଣ ସ୍ୱରରେ ) ମନ୍ତ୍ରୀଙ୍କୁ ରାଜ୍ୟ ଦେଇ ରାଜା ଏକା ଉର୍ବଶୀଙ୍କି ଘେନି ଗନ୍ଧମାଦନ ପର୍ବତରେ ବିହରଣ କରିବାକୁ ଯାଇଥିଲେ—

ସହ—ସେଇ ସବୁ ସ୍ଥାନରେ ତ ଯାଇଁ ସୁଖ ! ହଁ—ସେଠୁଁ କଣ ହେଲା !

ଚିତ୍ର—ସେଇଠୁଁ, ଗଙ୍ଗା କୂଳକୁ ଗଲେ । ସେଠାଇଁ ଉଦୟବତୀ ବୋଲି ଯକ୍ଷକନ୍ୟାଟିଏ ବାଲିଲିଙ୍ଗ କରି ଖେଳୁ ଥିଲା । ରାଜା ତାଙ୍କୁ ଏକ ଅଖିରେ ଚାହୁଁ ଥିଲେ—ସେଥି ପାଇଁ ଉର୍ବଶୀଙ୍କର ଭାରି ରାଗ ହେଲା !

ସହ—ହଁ, ତା ହେଇଥିବ ତ । ଭାରି ରାଗୀ ସେ । ରାଜାଙ୍କୁ ଭଲ ପାଅନ୍ତି

ପରା ? ଓହୋ ଇଁକି ଟିକିଏ ଧୀର ସମ୍ଭାଳି ପାରିଲେ ନାହିଁ ? ହୁଁ—
ସେଇଠୁଁ କଣ ?

ଚିଏ—ସେଇଠୁଁ ସେ ତାଙ୍କର ବୋଧ ଶୋଧ କିଛି ନ ମାନି, ଗୁରୁଙ୍କ ଶାପରୁ ଦେବତାଙ୍କ ନିୟମଯାକ ଘାଟେଷାଡ଼ ପକାଇ, ଯେଉଁ ବନକୁ ସ୍ତ୍ରୀମାନଙ୍କୁ ଯିବାକୁ ମନା—ସେଇଥିରେ ଯାଇଁ ପଶିଗଲା—ଯେମିତି ପଶିଲା ସେମିତି ଗୋଟିଏ ଲତା ପାଲଟି ଗଲା ।

ସହ—(ଦୁଃଖରେ) ଅତି ଅନୁରାଗରୁ ଏବେ ଏଇ ଫଳ ହେଲା ? ହଁ, ବିଧି ବାମ ହେଲେ କ'ଣ ନ ହୁଏ କଣ ? ଆଚ୍ଛା, ସେ ରାଜାଙ୍କ ଅବସ୍ଥା ଏହି କ୍ଷଣି କଣ ହୋଇଥିବ ! ! !

ଚିଏ—ସେ ଏହିକ୍ଷଣି ସେଇ ବନ ଭିତରେ ଖାଲି ଉର୍ବଶୀଙ୍କ ଚିନ୍ତାରେ ଦିନରାତି କଟାଉଛନ୍ତି ! ଆଉ ଏ ଯେଉଁ ମେଘ ଉଠୁଛି ଏଥିରେ ତ ଭଲ ମଣିଷର ମନ ଚଞ୍ଚଳ ହେବ । ତାଙ୍କ ମନ କେଜାଣି କଣ ନ ହଉଥିବ !

ସହ—ସଖି, ତାଙ୍କର ମିଳିବାର ଭଲା କିଛି ଉପାୟ ଅଛି ?

ଚିଏ—ସଙ୍ଗମ ମଣି ବିନା ଆଉ ଉପାୟ କଣ ? ସେ ପୁଣି ଯାଇଁ ପାର୍ବତୀଙ୍କ ଚରଣ ଧୂଳିରେ —

ସହ—ସଖି, ଏଡ଼େ ସୁନ୍ଦରରୂପ ଯାଙ୍କର, ତାଙ୍କୁ କେବେଁ ଏତେ କଷ୍ଟ ମିଳିବ ନାହିଁ । ନିଶ୍ଚେ ତଞ୍ଚଳ ମିଳିବାର କିଛି ଉପାୟ ଥିବ ! (ପୂର୍ବଦିଗକୁ ଚାହିଁ) ହୋଇଛି, ସୂର୍ଯ୍ୟ ଦେଖା ଦେଲେଣି ଆସ, ଆମ୍ଭେ ଏଥର ତାଙ୍କୁ ପୂଜା କରିବା ।

[ ଉଭୟେ ପାର୍ଶ୍ୱରେ ଅବସ୍ଥିତା । ]          ( ଇତି ପ୍ରବେଶକ । )

ଦୃଶ୍ୟ—ଗନ୍ଧମାଦନସ୍ଥ ଅରଣ୍ୟ ।

ନେପଥ୍ୟେ—(ରାଜାଙ୍କର ପ୍ରବେଶସୂଚକ ଗୀତ ।)

ବନ୍ଧୁର କନ୍ଦର          ବିରହରେ ପ୍ରିୟାର
ଅସ୍ଥା ନେଇ ଗହନରେ ।

ପଙ୍କଜ ବନ ଫୁଲେ ଅଙ୍ଗ ମଣ୍ଡି ମଞ୍ଜୁଳେ
ଭୁଲେ ଅଧି ବିଜନରେ । ୨ ।

[ ଉନ୍ମତ୍ତ ବେଶରେ ରାଜାର ପ୍ରବେଶ । ]

ରାଜା—(କ୍ରୋଧରେ) ଅରେ, ରେ, ଦୁରାତ୍ମା ରାକ୍ଷସ, ରହ ରହ ମୋହର ପ୍ରିୟତମାକୁ ନେଇ ଯାଉଛୁ କୁଆଡେ ? (ଚାହିଁ) କଣ ? ପର୍ବତ-ଶିଖରକୁ ଯାଇ ମୋହ ଉପରକୁ ପୁଣି ବାଣ ବର୍ଷଣ କରୁଛୁ ?

( ଲୋଷ୍ଟ୍ର ପକାଇବାକୁ ଯାଇ ଗୀତସହ ଚାରିଆଡ଼କୁ ଚାହିଁବା । )

ବିଜନପ୍ରଣୟିନୀ ଚାରୁଶୀଳା ମାନନୀ—
ମାନବଙ୍କୁ ବଇହରେ ।
ମରାଳ ଅଶ୍ରୁଜଳେ ଭାଷୁ ଭର, ବକଟଳ
ଭ୍ରମେବପ୍ରଲାପ କରେ । ୩ ।

(ଚିନ୍ତା କରି) ଓହୋ ! କି ଭ୍ରମ ! ଏହାତ ବର୍ଷାମେଘ । ପାପିଷ୍ଠ ରାକ୍ଷସ କାହିଁ ? ଏହା ଇନ୍ଦ୍ରଧନୁ-ଶରୂର ଶରାସନ ନୁହେ ! ଏ ଯେ ପ୍ରବଳ ଧାରାବୃଷ୍ଟି–ରାକ୍ଷସର ବାଣ ବୃଷ୍ଟିତ ନୁହେ ? ଆଉ ଏଯେ ଦସ୍ୟୁତ; କନକ-କାନ୍ତି ସୌଦାମିନୀ । କନକପ୍ରତିମା ମୋ ଉର୍ବଶୀ ତେବେ କାହିଁ ?

( ମୂର୍ଚ୍ଛିତ ଭାବରେ ପତନ ଓ ଉତ୍ଥାନସହ-ଗୀତ । )

ଜାଣିଲି ନିଶାଚର ପ୍ରେୟସୀକି ମୋହର
ହରି ନିଏ ଗୋପନରେ ।
ତେଣୁ ଏ ଜଳଧର ସୌଦାମିନୀ ଭାସ୍ୱର
ବରଷଇ ନିରନ୍ତରେ । ୪ ।

( କରୁଣଭାବରେ ଚିନ୍ତା କରି ) ତାହା ହେଲେ ସେ କେଉଁଠାରେ ? କ୍ରୋଧରେ କେଉଁଠି ଲୁଚି କରିଅଛୁ ? ନା, ତାହାର କୋପତ ଅଧିକ ସମୟ ରହେ କାହିଁ । ସ୍ୱର୍ଗକୁ ଅବା ଚାଲି ଯାଇଥିବ ! କିନ୍ତୁ ମୋଠାରେ ସେ ଅତ୍ୟନ୍ତ ଅନୁରକ୍ତା । ଅଉ କଣ ଦୁଷ୍ଟ ରାକ୍ଷସ ମୋହ ସମ୍ମୁଖରେ ହରଣ କରି ନେଲା ? ନୋହିଲେ ବା ଏକାତବେଳକେ ଦୃଷ୍ଟିରୁ ଅନ୍ତର ହେଲା

କପରେ ? [ଗୃହଅଙ୍ଗଣକୁ ଗ୍ରହିଁ ସକାଶ୍ବାସେ,] ହା, ହତଭାଗ୍ୟର ଦୁଃଖ ପଛକୁ ଦୁଃଖ ଲାଗି ରହୁଛି । ଏକେ ପ୍ରିୟତମାର ଦୁଃସହ ବିଚ୍ଛେଦ-ସେଥିରେ ପୁଣି ଏ ଉନ୍ମାଦକ ଘନକାଳ ଉପସ୍ଥିତ ! (ଜାନୁପାତ-ଗୀତ ।)

ହେ ଦେବ, ଧବଧର ଛଣେ କୋପ ସହର

ଭିକ୍ଷା ମାଗେଁ, ଯୋଡ଼ି କରେ ।

ଧରଣୀ ଧୂର୍ତ୍ତ ଅସି ପାଏଁ ଯଦି ଉର୍ବଶୀ

ଯଦା ଇଚ୍ଛା କର ପରେ । ୫ ।

(ଚିନ୍ତା କରି) ଅକାରଣେ କାହିଁକି ଏତେ ମନସ୍ତାପ କରୁଛି । ମୁନି-ମାନେ କହନ୍ତି କାଳ ରାଜାଙ୍କର ଅଧୀନ । ତେବେ ଏହି ବର୍ଷା କାଳକୁ ଅଦେଶ ଦିଏଁ ? (ହସିକରି ଉଠି) ମୁନିମାନେ ଯେତେବେଳେ କହନ୍ତି ଅବଶ୍ୟ ଅଦେଶ ଦେବି ।

(ଚିନ୍ତାକରି) ନା, ଅଦେଶ ଦେବି ନାହିଁ । ବର୍ଷାର ଏହି ଲକ୍ଷଣମାନ ମୋହର ରାଜୋପଚାରର ସ୍ୱରୂପ ହୋଇଅଛି । ଦେଖ, ଉପରେ ଏହି ସୌଦାମିନୀ ରଞ୍ଜିତ କାଦମ୍ବିନୀ ଚନ୍ଦ୍ରାତପ ପ୍ରାୟ ଲମ୍ବମାନ । ଏହି ଅଶୋକ ବୃକ୍ଷ ଗୁଡ଼ାକ ମଞ୍ଜରୀରୂପ ଚାମର ସଞ୍ଚାଳନ କରୁଅଛନ୍ତି ! ପୁଣି ସନ୍ଧ୍ୟାଗମ ଦେଖି ମୟୂରମାନେ ବୈତାଳିକ ତୁଲ୍ୟ ସ୍ତବ ପାଠ କରୁଛନ୍ତି । ଅଳ୍ପ ଏ ଜଳଧର ସୌଦାଗର ପରି ଶତ ଶତ ଧାରାହାର ଉପହାର ଦେବାକୁ ଆସୁଅଛି ! ! ଥାଉ, ଥାଉ ଏପରି ଐଶ୍ୱର୍ଯ୍ୟ ଦେଖାଇ ଫଳ କଣ ? ଯାଉଛି ଅଗେ ଏହି ଅରଣ୍ୟ ମଧ୍ୟରେ ପ୍ରିୟତମାର ଅନୁସନ୍ଧାନ କରିବି ।

ହଜାଇ ପ୍ରାଣଧନେ ଖୋଜେ ଗିରି କାନନେ

ଗଜରାଜ ଦୁଃଖ ଭରେ ।

ମରମ ବେଦନାରେ ଘାରି ହୋଇ ଅନ୍ତରେ

ଅତିମନ୍ଦେ ଗତି କରେ । ୬ ।

(ପରିକ୍ରମ ପୂର୍ବକ ଦେଖି) ହା ହା, ପ୍ରିୟତମାକୁ ଅନୁସନ୍ଧାନ କରି-ବାକୁ ଯାଇ ମୋହର ବିରହ ବ୍ୟଥା ଏଥିରେ ଅଧିକ ବୃଦ୍ଧି ପାଇଲା ।

ଏହି ନବୀନ କଦଳୀସ୍ତମ୍ଭର ଗର୍ଭ କେଡ଼େ ମଳିନ ଅଛି, ଜଳ ଜଳ ଦିଶୁଛି ! ଏହାକୁ ଦେଖି ମୋହର ପ୍ରିୟତମାର ସେହି ଅଭିମାନ ଛଳ ଛଳ ନେତ୍ର ମନେ ପଡ଼ି ଯାଉଛି । ଏହି ବାଟେ ଯଦି ଯାଇଥାଏ ! କିପରି ତାହାର ସନ୍ଧାନ ପାଇବି ! ଏହି ବର୍ଷା ସିକ୍ତ ସୈକତରେ ଯେବେ ସେ ପଦ୍ମପାଦ ପଡ଼ିଥାନ୍ତା, ତାହା ହେଲେ ଅବଶ୍ୟ ଅଳକ୍ତ ରଞ୍ଜିତ ପାଦଚିହ୍ନ ଦେଖାଯାନ୍ତା ! (ପରିକ୍ରମ କରି) ଏଥିର ଜାଣିଲି ଯେଉଁ ବାଟେ ଯାଇଛି ; ଲକ୍ଷଣ ଦେଖା ଗଲାଣି ।

ମାନିନୀ ଅଭିମାନରେ ଏହିଠାରେ ସ୍ତନବସନ ଫିଙ୍ଗି ଦେଇ ଚାଲି ଯାଇଛି । ଏହି ନୀଳ କାଞ୍ଚଲରେ ସ୍ଥାନେ ସ୍ଥାନେ ଅଶ୍ରୁସିକ୍ତ ଓଷ୍ଠରାଗ ଲାଗି ରହିଅଛି । ଅଛା, ଏହାକୁ ଆଗ ଆଣେଁ ! (ପରିକ୍ରମପୂର୍ବକ ଚିନ୍ତା କରି ସଲୋଚନେ) ହା ହା, ଏ ତାହା ନୁହେ । ଏଇ ଶ୍ୟାମଳତୃଣରେ ସାଧବବୋହୂର ରଙ୍ଗ ଏପରି ଦିଶୁଥିଲା ! ତେବେ ଏ ନିର୍ଜନ ବନରେ କିପରି ତାହାକୁ ପାଇବି ? (ଚାହିଁ) ଓହୋ,—ଆଗରେ ପର୍ବତ ଉପରେ ମୟୂର ପୁଚ୍ଛ ବିସ୍ତାର କରି ନୃତ୍ୟ ଗୀତ କରୁଅଛି । ତେବେ ଯାଏଁ ଆଗ ତାକୁ ପଚାରେଁ ? (ନିକଟକୁ ଯାଇ, ଉପବେଶନ ପୂର୍ବକ କର ଯୋଡ଼ି)

ଦେଖିଛୁ କିରେ କେକ      ମୋର ପ୍ରିୟ ପକ୍ଷୀକି
ଭ୍ରମୁ ଭ୍ରମୁ ଏହି ପଥେ ।
ମରାଳ ଗତି ତାର      ବିଧୁ ମୁଖ ସୁନ୍ଦର
ଜାଣିଥିଲେ କହ ମତେ । ୭ ।

(ଦେଖି) ଏ କଣ ; କିଛି ପ୍ରତ୍ୟୁତ୍ତର ନ ଦେଇ ସେହିପରି ନୃତ୍ୟ କଲା ? ଏହାର ଅନାଦରର କାରଣ କଣ ? (ଚିନ୍ତାକରି) ହଁ, ଜାଣିଲି ମୋହର ପ୍ରିୟତମା ନ ଥିବାରୁ ମୟୂର ଆଜି ନିଷ୍କଣ୍ଟକ ହୋଇ ଆନନ୍ଦରେ ପୁଚ୍ଛ ବିସ୍ତାର କରି ଅଛି । ଶଯ୍ୟନ କାଳରେ ସୁନ୍ଦରୀର ସେହି କୁସୁମ ଭୂଷିତ କେଶପାଶ ଆହା କେଡ଼େ ସୁନ୍ଦର ଦିଶେ ? ସେ ଥିଲେ ପୁଣି ମୟୂରର ଏହି ତୁଚ୍ଛ ପୁଚ୍ଛକୁ କିଏ ଚାହାନ୍ତା ? ଥାଉ, ଯେ ପର ଦୁଃଖରେ ସୁଖୀ

ତାକୁ ଆଉ କଷ୍ଟ ପଚାରିବା ଉଚିତ ନୁହେ । (ଚାରି ଆଡ଼କୁ ଚାହିଁ) ଅରେ, ଏଠାରେ ତ ଗ୍ରୀଷ୍ମ ଅବସାନ ଦେଖି ଉନ୍ମାଦନୀ ବନପ୍ରିୟା ଜାମୁ-ଡ଼ାଳରେ ବସିଅଛି । ପକ୍ଷିଜାତିମଧ୍ୟରେ ଏହିମାନେ ବଡ଼ ପଣ୍ଡିତା ! ଏହାକୁ ପଚାରିବ ଯାଉଛି । [ ଜାନୁପାତ ସହ-ଗୀତ ]

ହେ ପିକ ସହଚରି ସୁରଭୁଷା ସୁନ୍ଦରି !
ବିରହରେ ଦୟା ବହି ।
ନନ୍ଦନ ବନେ ଯେବେ ସଙ୍ଗିନୀକି ମୋ କେବେ
ଦେଖି ଥାଅ ଦିଅ କହି । ୮ ।

ଅୟି ମଧୁର ଭାଷିଣି, କାମୁକମାନେ ତୋତେ କାମର ଦୂତିକା ବୋଲି ସ୍ତୁତିକରନ୍ତି । ତୁହି ମାନିନୀଙ୍କ ମାନଭଙ୍ଗର ଅମୋଘ ଅସ୍ତ୍ର । ତାହା ହେଲେ ସେ ମାନିନୀକି ମୋତେ ଦେ-ନୋହିଲେ ସେ ଯେଉଁଠାରେ ଅଛି ସେଠାକୁ ନେଇ ଚାଲ୍ (ଶୂନ୍ୟକୁ ଚାହିଁ) କଣ କହିଲୁ, ତୁମପରି ଲୋକଙ୍କୁ କାହିଁକି ଛାଡ଼ି ଚାଲି ଗଲା ? ତେବେ ଶୁଣ୍, ସେ ମୋଠାରେ ରୋଷ ବହିଛି, ମାତ୍ର ରୋଷର କାରଣ କିଛି ଥିଲା ପରି ମନେ ହେଉ ନାହିଁ । ରମଣୀମାନଙ୍କର ପୁରୁଷଙ୍କ ଉପରେ ପ୍ରଭୁତ୍ୱ କାଳକୁ ଥାଏ । ଭାବର ପରିବର୍ତ୍ତନ ହେଉ ବା ନ ହେଉ ଅକାରଣେ ସେମାନେ ମାନ କରିଥାନ୍ତି । (ଚାହିଁ) କଣ ? ମୋ କଥାକୁ ଆଦୌ କାନ ଦେଲି ନାହିଁ ! 'ଆପଣା କପଣ ପରକୁ ଜଣା ନ ଯାଏ' ବୋଲି ଯାହା କହନ୍ତି ସତ ! ! ନୋହିଲେ ମୁଁ ଏଡ଼େ ବିପଦରେ ପଡ଼ିଛି, ସେ ମୋତେ ପୁଣି ହତାଦର କରି ମଦାନ୍ଧା କାମିନୀ ପରି ପକ୍ୱଜମ୍ବୂରସ ପାନରେ ମତ୍ତ ହୁଅନ୍ତା ? ସେ ମାନିନୀ ପରି ଏ ମଞ୍ଜୁ ଭାଷିଣୀ ପିକବଧୂ ମଧ୍ୟ ମୋତେ ଛାଡ଼ି ଗଲା ! ଯାଉ, ସେଥିପାଇଁ ମୋର ଦୁଃଖ ନାହିଁ । ବର୍ତ୍ତମାନ ଏଠାରୁ ଗଲେ ମଙ୍ଗଳ ! ( ପରିକ୍ରମପୂର୍ବକ ଶୁଣି ) ଏହି ଦକ୍ଷିଣ ପାର୍ଶ୍ୱରେ ସ୍ତ୍ରୀ-ନୂପୁର ଧ୍ୱନି ପରି କଣ ଶୁଣା ଯାଉଛି ? ତେବେ ଏହି ଦିଗକୁ ଯାଉଛି ସିନା ।

[ଗୀତ ।] ଶରଦ ଆବାହନରେ ସନ୍ତାପିତ ବିକଳେ

ସ୍ୱରବର କାନନରେ ।

ବଦନ ଝାପସା ଝରେ ଅଶ୍ରୁ ମଳିନ

ଶାନ୍ତି କଭରେ ବାମନରେ ।୪।

(କରୁଣ ଭାବରେ) ହା, ଧିକ୍ ଧିକ୍, ଏହା ନୂପୁର ଧ୍ୱନି ନୁହେ ଶରତ୍ କାଳ ଉପସ୍ଥିତ ଦେଖି ଏହି ରାଜହଂସମାନେ ମାନସକୁ ଯିବା ପାଇଁ ଯେଉଁପରି କଳରବ କରୁଥିଲେ ! (ଉଠି) ଅଚ୍ଛା ହଉ, ଏମାନେ ଉଡ଼ିଯିବା ଆଗରୁ ପ୍ରିୟତମାର କଥା ପଚାରି ଦେଇ ଥାଏଁ ! (ନିକଟରେ ଜାନୁପାତ ପୂର୍ବକ)

ହେ ରାଜହଂସ ! ଚଳିବ ମାନସ

ଶୁଣିଯାଅ ମୋ ଗୁହାରି ।

ପ୍ରେୟସୀ ବସ୍ତିନେ ଏ ଦୋଷ ବିପିନେ

ହେଉଅଛି ମୁହିଁ ଘାରି ।

ଝଣେ ଏ ମୃଣାଳ ତେଜି ହେ ମରାଳ

କହ ବାର୍ତ୍ତା ବହି ମତେ ।

ପରାର୍ଥ ସାଧନ ସ୍ୱାର୍ଥରୁ ପ୍ରଧାନ

ବଦନ୍ତି ସନ୍ଥ ଜଗତେ ? (ଈର୍ଷ୍ୟାକ୍ ଭାବରେ ଚାହିଁ)

ଏ ଯେପରି ବୁଝୁଁଛି ସେଥିରୁ ସତେ ଯେମିତି କହୁ ଦେଉଛି ଯେ ମୁଁ ଯିବାକୁ ଚଞ୍ଚଳ ଥିବାରୁ ତାଙ୍କୁ ଦେଖି ପାରି ନାହିଁ ! ! !

(ଉପବେଶନ କରି—ଗୀତ ।)

'ଜାଣିଲି ତୁ ମରାଳ ଗତିରେ ପ୍ରିୟାର

କିଏ ଶିଖାଇଲା ତୋତେ ॥

(ଉଠି) ରେ ମରାଳ, ଯଦି ତୁ ଜଳାଶୟ କୂଳରେ ମୋହର ପ୍ରାଣ-ପ୍ରେୟସୀଙ୍କୁ ଦେଖି ନାହୁଁ, ତାହାହେଲେ କହ ତାହାର ଏ ମନ୍ଥରଗତି କାହୁଁ ଶିଖିଲୁ ? (ନିକଟକୁ ଯାଇ ହାତଯୋଡ଼ି) ମରାଳ, ତୁହି ନିଶ୍ଚୟ ପ୍ରାଣପ୍ରେୟସୀର

ଗଲ ଚୋରକରହିଁ । ତେବେ ଏହିକ୍ଷଣି ତାହାକୁ ପ୍ରତ୍ୟର୍ପଣ କର । ଅଭିଯୋଗ ସ୍ଥଳରେ ଗୋଟିଏ ଅଂଶ ଚୋରକରିବା ସ୍ୱୀକାର କଲେ ସମଗ୍ର ପଦାର୍ଥ ଦେବାକୁ ବାଧ୍ୟ ।

ନିଶ୍ଚୟେ ମଦାଳସା ଗୃହୀଗଲ କାଳସା
ସତ୍ୟ ଅଛୁ ଚିତାହ ନୋହେ । ୧୦ ।

(ସାନୁନୟେ) ହେ ରାଜହଂସ, ପ୍ରତ୍ୟର୍ପଣ କର । (ନିରୀକ୍ଷଣ କରି) ଅରେ ! ହଂସୁଟି ବୋଧ ହୁଏ ରାଜା ଚୋରକୁ ଦଣ୍ଡ ଦିଅନ୍ତି ବୋଲି ଭାବି ଉଡ଼ିଗଲା । (ପରିକ୍ରମପୂର୍ବକ ଶୃହିଁ) ଓହୋ ; ଏଠାରେ ଗୋଟିଏ ଚକ୍ରବାକ ଚକ୍ରବାକୀ ସଙ୍ଗରେ ବସିଛି ? ଏହାକୁ ବି ଥରେ ପଚାରେଁ ?

(ଗୀତ)

ରଥାଙ୍ଗରେ ମୋହନ ଗୋରୋଚନା-ବରଣ
କହ କହ ଦେଖିଛୁକି ?
ମଧୁର ଯଉବନେ ମଧୁମାସ ସୁବନେ,
ଖେଳାଖେଳା ସଙ୍ଗିନୀକି । ୧୧

( ନିକଟରେ ଜାନୁପାତପୂର୍ବକ ) ହେ ରଥାଙ୍ଗ, ତୋହର ନାମ ରଥାଙ୍ଗ, ରଥାଙ୍ଗ ପର ସୁନ୍ଦରୀ ଉର୍ବଶୀର ନିତମ୍ବ । ମୁଁ ସେହି ରଥର ରଥୀ-ବର୍ତ୍ତମାନ ସଙ୍ଗ ଛଡ଼ା ବିରଥ ହୋଇଅଛି । ଏବେ ମୋହର ମନୋରଥ ପୂର୍ଣ୍ଣ କର, ଏହି ନିବେଦନ । ଏ କଣ ? କେବଳ କେଁକେଁ ବୋଲି କହୁଛି ଅଉ କିଛି ନାହିଁ । ତାହାହେଲେ ମୋତେ ଚିହ୍ନି ପାରୁ ନାହିଁ । ମୁଁ କିଏ ଶୁଣିବୁ ?

ଶଶୀ ଦିବାକର ଅଟନ୍ତି ମୋହର
ପିତାମହ ମାତାମହ ।
ଏ ନିଖିଳ ଧରା, ଉର୍ବଶୀ ଅପ୍ସରା
ପତ୍ନୀ ଦ୍ୱୟ ସୁଖାବହ ।

ଏ କଣ ? ତୁମେ ହୋଇ ରହିଲୁ କାହିଁକି ? ତେବେ ତରସ୍ୱାସ

କରେଁ ? (ଜାନୁପାତ କରି) ରେ ରଥାଙ୍ଗ, ଅପଣା ସହିତ ତୁଳନା କରି ବିରହ କର, ତୁ ସର୍ବଦା ପ୍ରଣୟିନୀର ପ୍ରଣୟବଶ । କ୍ଷଣେସୁଦ୍ଧା ବିଚ୍ଛେଦ ସହି ପାରୁ ନାହୁଁ । ଟିକିଏ କେତେବେଳେ ସହଚରୀ ପଦ୍ମପତ୍ରରେ ଅଙ୍ଗ ଲୁଚାଇଲେ କାତର ସ୍ୱରରେ ଡାକ ଛାଡୁ । ତାହା ହେଲେ କିହି ଏ ବିରହୀ ଲୋକକୁ ସହଚରୀର ସମ୍ବାଦ ଦେବାକୁ ଏତେ ବିମୁଖ କାହିଁକି? (ବସି) ହିଁ, ମୋ ସଦୃଶ ହତଭାଗ୍ୟମାନଙ୍କ କପାଳରେ ଏହିପରି ଘଟେ । ତେବେ ମୁଁ ଯାଉଛି, ସ୍ଥାନାନ୍ତରକୁ ଯିବି । (ପରିକ୍ରମ କରୁଁ) ଏଠାରେ ଏହି ପଦ୍ମ ଭିତରେ ଭ୍ରମରଗୁଞ୍ଜନ ମୋତେ ଘନଘନ ବାଧା ଦେଉଛି । ଏହାକୁ ଶୁଣିଲାରୁ ଏବେ ପ୍ରିୟାର ଅଧର ଦଂଶନକାଳୀନ ଶୀତ୍କାରଧ୍ୱନି ମୋର ମନେ ପଡୁଛି ! ତେବେ ଯାଉଚି ଏହି କମଳବାସୀ ଭ୍ରମରକୁ ଥରେ ପଚାରି ଥାଏଁ । ପଛେ ଆଉ ଯେପରି ଅନୁତାପ କରିବାକୁ ହେବ ନାହିଁ ।

ହେ ମଧୁକର, ତୁ କଣ ସେ ଖଞ୍ଜନାକ୍ଷୀକି ଦେଖି ନାହୁଁ ? ଯେବେ ତୁ ସେ ସୁନ୍ଦରୀର ମୁଖ ଦେଖିଥାନ୍ତୁ, ତାହାହେଲେ କଣ ଏ ପଦ୍ମର ସାମାନ୍ୟ ସୌରଭରେ ପୁଣି ଆକୃଷ୍ଟ ହୋଇଥାନ୍ତୁ ! ଯାଉଛି—ଅନ୍ୟତ୍ର ଅନ୍ୱେଷଣ କରିବି (ପରିକ୍ରମପୂର୍ବକ ଦେଖି) ହେଉଛି, ସେଠାଇଁ କଦମ୍ବ ଗଛତଳେ କଳଭରାଜ କରିଣୀ ଅଙ୍ଗରେ ଅଙ୍ଗକୁ ଘଷି ଠିଆ ହୋଇଛି । ପାଖକୁଯାଏଁ ? ନା, ଏତେବେଳେ ନିକଟକୁ ଯିବା ଉଚିତ ନୁହେ । ତାହାର ପ୍ରିୟତମା ଅପଣା ଶୁଣ୍ଡରେ ଶଲ୍ଲକୀଡାଳ ଭାଙ୍ଗି ଆଣି ଆହାର ଦେଉଛି, ସେ ଅଗ ତାହା ଆହାର କରି ପାରୁ । (କ୍ଷଣାନନ୍ତର) ଅରେ ! ଏତ, ସବୁତକ ଉଦରସ୍ଥ କରି ପାରିଲାଣି । ମୁଁ ଆଉ ବିଳମ୍ବ କାହିଁକି କରୁଛି—ପଚାରେଁ ।

ଗୀତ ।

ହେ ପ୍ରିୟ ଗଜବର ଦିଅ ମୋତେ ଉତ୍ତର
କିନ ପଥେ ଦେଖିଛକି ।

ବଦନ ଶଶଧର— ଠାରୁ ବଳ ସୁନ୍ଦର,
ମୋହପ୍ରାଣ ସଙ୍ଗୀନକ । ୬ ।

(ଦୁଇପାଦ ଅଗକୁ ଯାଇ) ହେ ମଦମତ୍ତ ଯୂଥପତ । ଲାବଣ୍ୟମୟୀ ସେହି ଯୁବତୀଶିରୋମଣିକ କେଉଁଠି ଦେଖିଛ ? ଯାହାର ଯୂଥୀପୁଷ୍ପ ଭୂଷିତ କେଶପାଶ ଦୂରରୁ ମନୋହର ଦିଶେ ! (ସାନନ୍ଦେ ଶୁଣି) ଆହା-ହା, ଏ ମନ୍ଦ୍ରଧ୍ୱନିକ୍କାର ମୋତେ ବଡ ଆଶ୍ୱାସ ଦେଲା । ନିଶ୍ଚୟେ ତେବେ ସୁନ୍ଦରୀକ ପାଇବ ! ଗଜରାଜ, ଅମ୍ଭ ଦୁହିଁଙ୍କର ସମାନ ଧର୍ମ । ସେଥିପାଇଁ ମୋହର ତୁମ୍ଭ ଉପରେ ଏତେ ଅନୁରାଗ । ଦେଖ, ମୋତେ ରାଜାଧିରାଜ ବୋଲି କାହନ୍ତି-ତୁମ୍ଭେ ମଧ ଗଜାଧିରାଜ । ମୋହର ଯେପରି ସର୍ବଦା ଧନଦାନ କାର୍ଯ୍ୟ । ତୁମ୍ଭର ସେହିପରି ଅଜସ୍ର ମଦଦାନ । ରମଣୀରତ୍ନ ଉର୍ବଶୀ ମୋହର ଗୁଣାନୁରାଗିଣୀ । ଏହି କରେଣୀସୁନ୍ଦରୀ ସେହିପରି ତୁମ୍ଭଠାରେ ଅନୁରକ୍ତା । ସବୁ ସମାନ, କେବଳ ପ୍ରଭେଦ ଏତିକ ଯେ ତୁମ୍ଭେ ପ୍ରିୟାବିଚ୍ଛେଦ ଅନୁଭବ କରନାହିଁ । ହଉ, ତୁମ୍ଭେ ସୁଖରେ ଥାଅ-ମୁଁ ଯାଉଛୁ । (ପରିକ୍ରମପୂର୍ବକ ଦେଖି) ଅଗରେ ସୁରଭି କନ୍ଦର ପର୍ବତ ଦିଶୁଛି ? ଏହି ମନୋହର ଶୈଳଟି ଅପ୍ସରାମାନଙ୍କର ବଡ଼ ପ୍ରିୟ ସ୍ଥାନ । ତାହାହେଲେ କଣ ଏହି ବଣଉପତ୍ୟକାରେ ସେହି ସୁରସୁନ୍ଦରୀକ ଦେଖିବ ! (କେତେ ଦୂର ଯାଇ) ଉଃ, ଭାରି ଅନ୍ଧକାର । ଅଚ୍ଛା ଦେଖେଁ ବିଜୁଳି ଆରା ବାଟ କଢାଇବ ! କି ଆଶ୍ଚର୍ଯ୍ୟ ! ମୋହର ଦୁର୍ଭାଗ୍ୟକୁ ମେଘରେ ବିଜୁଳି ସୁଦ୍ଧା ନାହିଁ । ଯାହାହେଉ ଏ ଶୈଳକୁ ନ ପଚାରିଲେ ଅନ୍ୟତ୍ର ଯିବି ନାହିଁ ।

ଅନ୍ୟ ରଙ୍ଗରେ ଗୀତ ।

ଦେଖ ସଙ୍ଗିନ, ରସ ରଙ୍ଗିନ,
ପଶୁରାଜନ କ କରେ ଗୋ । ୦ ।
ବର ଗୁଞ୍ଜା ବହନ, ଚୂରଲ କେଉଁ ପର
ଅଛୁରେ ଏହି ଗିରି ଶିଖରେ ଗୋ ।

ଶରଚ୍ଚନ୍ଦ୍ରପ୍ରଭାରେ, ବଦାଇ ଧରାଧରେ,
ଅକଳଙ୍କ ଛବେ ଦୁଃଖରେ ଗୋ ।
ପ୍ରିୟ ସଖୀ ବହୀକେ, ମଉନେ ବନେ ବନେ
ଗଲଲୁ ଶୂନ୍ୟମନେ, ମନ୍ଦରେ ଗୋ ।
ଧରି ବର୍ଗହଲରେ, ଭରସ ବଦନରେ,
କପର ଗିରିପରେ, ବହରେ ଗୋ ।

ହେ ପୃଥୁ ନତମ ଗିରିବର, ପୃଥୁଳପୟୋଧରା ନତମ୍ବିନୀ କି ତୁମ୍ଭର ବକ୍ଷସ୍ଥଳ ଆଶ୍ରୟ କରିନାହିଁ ? କାହିଁକି—ତୁନି ହୋଇ ରହିଲ ! ବୋଧ ହୁଏ ଦୂର ହେତୁରୁ ଶୁଣି ପାରିଲ ନାହିଁ । ଅଚ୍ଛା ହଉ, ପାଖକୁ ଯାଇ କହେଁ । (ନିକଟକୁ ଯାଇ ଅଞ୍ଜଳି ପୂର୍ବକ) ହେ ସର୍ବଶୈଳାଧିରାଜ, ଏହି ସୁନ୍ଦର ବନ ପ୍ରଦେଶରେ ମୋ ସଙ୍ଗତ୍ୟାଗିନୀ ସେହି ସର୍ବାଙ୍ଗ ସୁନ୍ଦରୀ ତୁମ୍ଭର ଦୃଷ୍ଟିଗୋଚର ହୋଇଅଛି ? [ସେହିପରି ପ୍ରତିଧ୍ୱନି ଶୁଣି, ସହର୍ଷେ] ଆଶ୍ଚର୍ଯ୍ୟ କଥା ! ଏତ ଦୃଷ୍ଟିଗୋଚର ହୋଇଅଛି ବୋଲି କହୁଛି । ତାହା-ହେଲେ କହିକର ଦେଖେଁ ! [ଚତୁର୍ଦ୍ଦିଗ ନିରୀକ୍ଷଣ କରି ଦୁଃଖରେ] ହା ଧିକ୍ ଧିକ୍ ଗୁମ୍ଫା ଭିତରୁ ମୋ କଥାର ପ୍ରତିଧ୍ୱନି ଏ ଶୁଣା ଯାଉଥିଲା ! ହା ହା ! [ମୂର୍ଚ୍ଛାସହ ପତନ, ପୁଣି ଉଠି ବସି ବିଷଣ୍ଣଭାବରେ] ଓଃ, ବଡ ଶ୍ରାନ୍ତ ହୋଇ ପଡ଼ିଲଣି । ଯାଉଛି ଏହି ଗିରିନିର୍ଝରଣୀକୂଳରେ ଶୀତଳବାୟୁ ସେବନ କରିବି । [ପରିକ୍ରମପୂର୍ବକ ଦେଖି] ନବାମ୍ବୁକଳୁଷିତା ନଦୀକୁ ଦେଖି ଏବେ ମୁଁ ସୁରତ ଉପଲବ୍ଧି କରୁଅଛି । ଦେଖ, ଏହି ତରଳ ତରଙ୍ଗ ଏହାଙ୍କ ଭ୍ରୂଭଙ୍ଗ, ଏଇ ଦୋଳାୟିତ ବିହଙ୍ଗମାଳା ରସନା ଆଉ ଏ ଫେନପୁଞ୍ଜ ଟୀକ୍ ସମ୍ଭ୍ରମ ଶିଥିଳବସ୍ତ୍ର ପରି ଧାଉଁଅଛି । ଅହୁରି ମଧ୍ୟ ଏ ଯେପରି ସ୍ଖଳିତ ଗତିରେ ଯାଉଛି ସେଥିରୁ ଅନୁମାନ ହେଉଛି ନିଶ୍ଚୟ ସେହି କୋପନା ମୋହର ଅଭିନୟ ସହି ନ ପାରି ନଦୀରୂପରେ ପରିଣତା ହୋଇଅଛି ।

ଅଚ୍ଛା ହଉ, ଏହାକୁ ଅଗୋ ସୁପ୍ରସନ୍ନା କରେଁ ?
ସୁନ୍ଦରୀ ତରଙ୍ଗିଣି ମୋହର ପ୍ରାଣ ସଙ୍ଗିନୀ,
ଜଳ-କୂଳ ଝଙ୍କାରରେ ।

କ୍ଷମ ମୋ ଦୋଷ ଯାହା          ସୁରଜନ ସୁଲୋଚନା

ବହ୍ନିଗାଇ ଦୋଳାଚିତ୍ତରେ । ୧୯

(ନିକଟକୁ ଯାଇ ଜାନୁପାତ ପୂର୍ବକ)

ଅଞ୍ଚଳ ଧୀରଣ          ତୁମ୍ଭଠାରେ ଜଣ

କହ ନାହିଁ କିଛି କଥା ।

କି ଦୋଷେ ମାନନ          ସାଗର ଗାମିନ !

ହୋଇଅଛି ପୋଡ଼ ମଥା ।

କାହିଁ କିଛି ଉତ୍ତର ଦେଉ ନାହିଁ ? ତେବେ ପ୍ରକୃତରେ ଏ ନଦୀ ? ଉର୍ବଶୀ ହେଲେ କି ପୁରୁରବାକୁ ଛାଡ଼ି ସାଗର ଗାମିନୀ ହୁଅନ୍ତା ! ହଉ ଯା ହେବାର ହେଲାଣି, ଆଉ ଶୋକ କରି ଫଳ କଣ ? ଯାଉଛି ଯେଉଁଠାରେ ସୁଲୋଚନା ଅନ୍ତର୍ହିତ ହୋଇଗଲା ସେହିଠାକୁ ଯିବ । (ଅଦୂରେ ହରଣକୁ ଦେଖି) ଏଠାରେ ଗୋଟିଏ ହରଣ ଶୋଇଛି ପରି ! ଅଗେ ପାଖକୁ ଯାଇଁ ଯାହା ହେବ । [ନୃତ୍ୟସହ ଗୀତ]

ନନ୍ଦନ କାନନ ବାସ ପରିହୃଣ, ଦେଖ ଅମରଗଜ ତୁଙ୍ଗେ ।

ତରୁ କୁସୁମିତ, ପାଦପ[redacted]ରମ୍ୟ ମହୀଧର ଶୃଙ୍ଗେ ।

ସୁସ୍ୱର କୋକିଳ ରବ ମନୋହର ମତ୍ତ ମଧୁପ ଗୁଞ୍ଜନାଦେ ।

ଚିତ୍ତ ବିମୋହନ ମଞ୍ଜୁଳ କାନନ ଦେଖି ଚଳିଲ ଉନ୍ମାଦେ ।

ଆହା ଏ ଚିତ୍ର ହରଣଟି ଦେଖିବାକୁ କେଡ଼େ ମନୋହର ହୋଇଛି । ମନେ ହୁଏ ଯେପରି କି ବନଲକ୍ଷ୍ମୀ କଟାକ୍ଷପାତ କରି ବନ ଶୋଭା ପରିଦର୍ଶନ କରୁଅଛନ୍ତି । (ଦେଖି) ଓହୋ ! ଏ କସ୍ତୁରୀ ସ୍ତନ୍ୟପାୟୀ ଶିଶୁ ସହିତ ଅସୂଥିବା ହରଣୀକି କଟାକ୍ଷ କରୁଛି । ( ପାଖକୁ ଯାଇ ) ହେ ଯୂଥପତି, ଏ ଅରଣ୍ୟ ମଧ୍ୟରେ ମୋହର ସହଚରୀକି ଦେଖି ନାହଁ ? ତାହାର ଲକ୍ଷଣ କହୁଛି, ଶୁଣ । ତୁମ୍ଭର ଏ ସହଚରୀ ପରି ସେ ସୁନାସୀ ଆଉ ଏହିପରି ବିଶାଳାକ୍ଷୀ (ଦେଖି) କଣ, ମୋ କଥା ଅନାଦରି ନ ଶୁଣି ତାହା ପାଖକୁ ଚାଲିଗଲା ! ହଁ, ଭଗବାନ୍ ଉପଯୁକ୍ତ ହେଲେ ଏହି-

ଦର କେତେ ଅପମାନ ଲାଞ୍ଛନା ସହିବାକୁ ହେବ । ତେବେ ଏଠାରେ ରହିବା ଅଉ ଫଳ କଣ? (କିଛି ଦୂର ଯାଇ ଦେଖି) ଭଲ କିଛି ହେଉ, ପାଦଚିହ୍ନ ଦେଖା ଗଲାଣି । ଏଇତ ସେହି ରଙ୍ଗ କଦମ୍ବ ଫୁଲ! ଯାହା ଭଲ ହୋଇ ନ ଫୁଟୁଣୁ ସେ ମସ୍ତକରେ ଧାରଣ କରିଥିଲା । ( କିଛି ଦୂର ଯାଇ ) ପଥର ଫାଟ ଭିତରେ ଏଇଟା କଣ ରଙ୍ଗା ଦିଶୁଛି ? ସିଂହ କଣ ହସ୍ତିବଧ କରି ଖଣ୍ଡେ ମାଂସ ପିଣ୍ଡ ପକାଇଛି ନା ଶୂନ୍ୟରୁ ଅଗ୍ନି ବୃଷ୍ଟି ହୋଇ ଏହି ଅଗ୍ନି ସ୍ଫୁଲିଙ୍ଗ ପଡ଼ିଛି ।

[ ବିଶେଷରୂପେ ନିରୀକ୍ଷଣ କରି ] ନା, ଏ ଗୋଟିଏ କିଛି ମଣି ହେବ ଅଶୋକକଳିପରି ରଙ୍ଗ ଦିଶୁଛି । ମଣିଟି ବଡ଼ ମନୋହର । ଅଚ୍ଛା, ଏଇଟିକି ତେବେ ନେବା ! [ଗ୍ରହଣାଭିନୟ]

ସୁତନୁ ଭବନାରେ କରିବର ବନରେ
ଧନୁ ଧନ କୃଶ ଦୁଃଖେ ।
ନଦ୍ଧନୁ ଅଶ୍ରୁବାରି ଅଧରଲେ ବାହାରି
ପଦ୍ମମ୍ଳାନ କଲା ମୁଖେ । ୧୪ ।

[ଗ୍ରହଣ ପୂର୍ବକ–ସ୍ୱଗତ] ଯାହା ମସ୍ତକରେ ମନ୍ଦାରପୁଷ୍ପ ଶୋଭା ପାଉଥିଲା ଏହି ମଣି ତାହାରି ଧାରଣ କରିବାର ଉପଯୁକ୍ତ । କିନ୍ତୁ ସେହି ସୁରାଙ୍ଗନା ଏହିକ୍ଷଣି ଦୁର୍ଲ୍ଲଭା । ତେବେ ଏହାକୁ ନେଇ କାହିଁକି ଅଶ୍ରୁସିକ୍ତ କରିବା ? [ବିସର୍ଜନ]

[ନେପଥ୍ୟେ] ନିଅ ନିଅ ବତ୍ସ ତାକୁ ପାଇବ ରମଣୀ
ଗୌରୀ ପାଦପଦ୍ମୁଁ ଜାତ ଏ ସଙ୍ଗମ ମଣି ।

ରଜା—[ଉପରକୁ ଗୃହିଁ] କିଏ ଏ ଅମୃତ ବର୍ଷଣ କଲା ! [ଦେଖି] ଏହୋ, ଭଗବାନ ମୃଗରାଜଧାରୀ, ଆପଣଙ୍କ ଏହି ଉପଦେଶରେ ଯଥେଷ୍ଟ ଉପକୃତ ହେଲି [ମଣି ଗ୍ରହଣ କରି] ହେ ସଙ୍ଗମମଣି, ମୁଁ ପ୍ରିୟା ବିରହିତ ହୋଇ ଘୋର ଦୁଃଖ ଭୋଗ କରୁଅଛି । ଯଦି ତୋହ ଲାଗି ତାହା ସହିତ ମିଳନ ହୁଏ, ତାହା ହେଲେ

ମହାଦେବ ଲଲାଟରେ ଯେପରି ଚନ୍ଦ୍ରକଳା ଧାରଣ କରନ୍ତି ସେହିପରି ମୁଁ ତୋତେ ସର୍ବଦା କପାଳରେ ଧାରଣ କରିଥିବି । [ପରିକ୍ରମ ପୂର୍ବକ ଦେଖି] ଏହି କୁସୁମ ରହିତା ଲତାଟିକୁ ଦେଖି ମୋହର ମନ କାହିଁକି ପ୍ରେମାନ୍ୱିତ ହେଉଅଛି ! ଏପରି ହେବାର ଏକା କାରଣ ଅଛି । ଏହାର ବର୍ଷାମ୍ବୁ ସିକ୍ତ ପଲ୍ଲବ ମୋତେ ପ୍ରିୟତମାର ଅଶ୍ରୁସିକ୍ତଅଧର ପରି ଦିଶୁଅଛି । ପୁଷ୍ପକାଳ ଅତୀତ ହୋଇ ଥିବାରୁ ଏହା ଦେହର ଆଭରଣ ଶୂନ୍ୟ ଅବସ୍ଥା ଜଣାଇ ଦେଉଅଛି । ବୋଧ ହୁଏ ମାନିନୀ ପାଦପତିତ ପତିର କଥା ତେତେବେଳେ ଅଗ୍ରାହ୍ୟ କରି ଏବେ କେବଳ ଅନୁତାପ କରୁଛି । ତାହା ହେଲେ ପ୍ରିୟାନୁକାରିଣୀ ଲତାର ଆଲିଙ୍ଗନ ପ୍ରଣୟୀ ହୁଏ ?

[ପାଖକୁ ଯାଇ ଆଲିଙ୍ଗନ କରନ୍ତେ ସହସା ସେହି ସ୍ଥାନରେ ଉର୍ବଶୀର ଆବିର୍ଭାବ]

ରାଜା—[ନିମୀଳିତାକ୍ଷରେ ସ୍ପର୍ଶୋଦ୍ଭିନ୍ନ କରି] ଆହା ! ଉର୍ବଶୀର ଶ୍ରୀଅଙ୍ଗସ୍ପର୍ଶ ବାରି ମୋହର ସର୍ବାଙ୍ଗ ଯାକ ସୁଖମୟ ହୋଇ ଗଲା ! କିନ୍ତୁ ବିଶ୍ୱାସ ହେଉ ନାହିଁ । ଯାହାକୁ ପ୍ରିୟା ବୋଲି ବିଚାରୁଛି ସେ କ୍ଷଣକେ ଅନ୍ୟରୂପ ହୋଇ ଯାଉଅଛି । ତେବେ କିଛିକ୍ଷଣ ଚକ୍ଷୁ ମୁଦ୍ରିତ କରି ଆଗେ ସ୍ପର୍ଶ ସୁଖ ଅନୁଭବ କରେଁ ? କେଜାଣି ପ୍ରିୟତମା ବୋଲି କହିଁ ଦେଲେ ଅନ୍ୟ କଣ ହୋଇଯିବ !

[ଧୀରେ ଚକ୍ଷୁଉନ୍ମୀଳନ କରି] କଣ, ସତେ ଉର୍ବଶୀ ! ! [ମୂର୍ଚ୍ଛାପନ୍ନ ପତନ]

ଉର୍ବ—ମହାରାଜ, ଆଶ୍ୱସ୍ତ ହୁଅନ୍ତୁ ।

ରାଜା—[ସଜ୍ଞାଲାଭ କରି] ପ୍ରିୟେ, ଆଜି ମୁଁ ଜୀବିତ । ଏତେ ଦିନଯାଏ ଘୋର ବିରହ ଅନ୍ଧକାରରେ ମୃତପ୍ରାୟ ଥିଲି । ଆଜି ତୁମ୍ଭକୁ ପାଇ ଚେତନା ଲାଭ କଲି ।

ଉର୍ବ—ମହାରାଜ, ମୋ ଦୋଷ କ୍ଷମା କରିବେ । "ମୁହିଁ ଅବିବେକିନୀ ଆପଣଙ୍କୁ ଏତେ ଅବସ୍ଥାରେ ପକାଇଲି ? ମୋହରି ସବୁ ଦୋଷ, ଏଥର ତାହା ପାସୋରି ପକାନ୍ତୁ ।

ରାଜା—ସୁନ୍ଦରୀ ! ମୋତେ ଆଉ ପ୍ରସନ୍ନ କରିବାକୁ ହେବ ନାହିଁ । ତୁମ ଦର୍ଶନରେ ମୋହର ଅନ୍ତରାତ୍ମା ପ୍ରସନ୍ନ ହୋଇ ଗଲା । କିନ୍ତୁ ତୁମ୍ଭେ ଏତେକାଳ ଏକା କେଉଁଠି ଥିଲ ?

[ରାଜା—ଉଠି ଗୀତରେ]

ପରମେଶ୍ୱରି ! କାହିଁ ଥିଲ ସୁନ୍ଦରି !
ହେ ଗୋରି, ନାରୀମଣି ସୁଲୋଚନି, ଛଳନା କରି ॥
କେଉଁ ଦେଶରେ-କେଉଁ ଦୋଷରେ-ପରିହାସରେ-ଅବା ରୋଷରେ
କିବା ସହି ସୁରେଶ୍ୱରେ-ସ୍ୱରଗବାସରେ-ରସହାସଲାସରେ-ରଖାଇବାରେ, ଭୁଲି ।
କେତେ ଖୋଜିଲି-ଯେତେ ହେଜିଲି-ସର୍ବେ ପୁଚ୍ଛିଲି-ଅଶ୍ରୁ ମୁଞ୍ଚିଲି
ଗିରିଦରୀ ବୁଲିଲି-କାନନ ଫେରିଲି-ବିରହରେ ମରିଲି-ଅର୍ପି ସହିଲି-ଝୁରି ।

ଉର୍ବ—ମହାରାଜ, ମୁଁ ଅନ୍ତଃକରଣରେ ତା ସବୁ ଦେଖିଚି ।

ରାଜା—ଅନ୍ତଃକରଣରେ କଣ ? ବୁଝି ପାରିଲି ନାହିଁ ।

ଉର୍ବ—ଶୁଣନ୍ତୁ ମହାରାଜ, ଆଗେ ଦେବ କାର୍ତ୍ତିକେୟ ଚିରକୁମାରବ୍ରତ କରି ଏହି ବନରେ ଥିଲେ, ଆଉ ଏଇ ନିୟମ କରିଥିଲେ କି—

ରାଜା—କି ନିୟମ ?

ଉର୍ବ—ଯେବେ କେହି ସ୍ତ୍ରୀ ଏ ବନକୁ ଆସିବ, ସେ ଲତା ପାଲଟି ଯିବ? ସଙ୍ଗମ ମଣି ବିନା ତାର ଆଉ ଉଦ୍ଧାର ନାହିଁ । ମୁଁ ଗୁରୁଦେବଙ୍କ ଶାପରୁ ଦେବତାମାନଙ୍କ ନିୟମ କେତେବେଳେ ପାସୋରି ପକାଇ ଆପଣଙ୍କ ଆଦର ନ ଭାଳେନ ଏଇଥି ଭିତରେ ପଶିଲି । ପଶିବା ମାତ୍ରକେ ତ ଲତା ପାଲଟି ଗଲି ।

ରାଜା—ପ୍ରିୟେ ! ଏଥର ସବୁ ଜଣାଗଲା ! କୋହଲେ କି ମୁହୂର୍ତ୍ତେ ବିଚ୍ଛେଦ ଯାହାର ଯୁଗାୟମ ଥିଲା, ସେ ପୁଣି ଏ ଦୁଃସହ ଦୀର୍ଘ ବିରହ ସହି ପାରନ୍ତା ?

ଭଗବାନଙ୍କ କୃପାରୁ ମୁଁ ସଙ୍ଗମ ମଣିକି ପାଇଥିଲି । ସେଥିପାଇଁ ଏବେ ତୁମକୁ ପାଇଲି (ମଣି ପ୍ରଦର୍ଶନ) ।

ଉର୍ବ—ଏହି ସେଇ ସଙ୍ଗମମଣି ? ସେଇଥି ପାଇଁ ଯେମିତି ମତେ ଛୁଇଁଛନ୍ତି ସେମିତି ନିଜରୂପକୁ ପାଇଲି । (ମସ୍ତକରେ ମଣି ଧାରଣ ।)

ରାଜା—ଠିକ୍ ଏ ସେହିପରି ଠିଆ ହେବାକୁ ଦେଖି ? ରକ୍ତପଦ୍ମରେ ବାଳସୂର୍ଯ୍ୟ-କିରଣ ପଡ଼ିଲେ ଯେପରି ଦିଶେ ତୁମ ମୁଖ ମଣ୍ଡଳ ଏ ମଣିଯୋଗେ ସେହିପରି ଦିଶୁଅଛି ।

ଉର୍ବ—ମହାରାଜ, ବହୁତ ଦିନ ହେଲା ରାଜଧାନୀ ଛାଡ଼ି ଅସିଲେଣି । ପ୍ରଜାମାନେ ସେଥିପାଇଁ ବିରକ୍ତ ହେଉଥିବେ ଚାଲନ୍ତୁ, ଏଥର ଯିବା ।

ରାଜା—ତଥାସ୍ତୁ । କିନ୍ତୁ ଅୟି ସୁବଦନେ, ବର୍ତ୍ତମାନ ଏଇ ନିବେଦନ !! ମୋତେ ଏହି ଅଚିରବିଳସିତ ତଡ଼ିତ୍ ସୁନ୍ଦର, ସୁରଧନୁଚିତ୍ରିତ ନବ ଜଳଦ ବିମାନରେ ପୁରକୁ ନିଅ । (ବିମାନରେ ଉଭୟଙ୍କର ଅବସ୍ଥାନ ।)

( ସମ୍ମୁଖରେ ପୂର୍ବ ଅପ୍ସରା ଦ୍ୱୟଙ୍କର ନୃତ୍ୟସହ ଗୀତ । )

ପ୍ରେମିକ ପ୍ରେମିକା ମିଳନ
ଦେଖ ଦେଖ ଏ ହରଷ ବଦନ ।
ପ୍ରେମରସେ ପୂର୍ଣ୍ଣ ଆଜି ଗିରି ନଦୀ ବନ ।
ପ୍ରେମର ଲହରୀ ଉଠେ ପ୍ରେମେ ଏ ବଦନ ଫୁଟେ
ପ୍ରେମସୁଧା ହୃଦ ଲୁଟେ, ପ୍ରେମେ ନିମଗନ ।
ଦେଖ ପ୍ରେମ ସଜ ବାଜ, ପ୍ରେମେ ପୁଲକିତ ଆଜ
ରାଜହଂସୀ ହଂସରାଜ, ଆହା କି ଶୋଭନ ।
ପ୍ରେମର ବିମାନ ରାଜେ ପ୍ରେମ ବୀଣା ହୃଦେ ବାଜେ
ପ୍ରେମେ ଚରାଚର ମଜ୍ଜେ, ପ୍ରେମର ଭୁବନ ।

(ଖଣ୍ଡଧାରରେ ପ୍ରସ୍ଥାନ ଏବଂ ପଟକ୍ଷେପଣ)

—~~~—~~~—

## ପଞ୍ଚମ ଅଙ୍କ ।

ଦୃଶ୍ୟ—ରାଜପ୍ରାସାଦ ସମ୍ମୁଖ । (ସାନନ୍ଦ ବିଦୂଷକର ପ୍ରବେଶ ।)

ବିଦୂ—ଓହୋ ! ! ମନଷ ଏଥର ବାହ ପାଇଲା । ମହାରାଜା ଆମର

ସେଇ ସୁନ୍ଦରୀଙ୍କ ଯେଉଁ ନନ୍ଦନବନ ଚନ୍ଦନବନ ସେଥିଏ ଭୁଲି କପାଳସୁଭାଗ୍ୟକୁ ଏବେ ରାଜ୍ୟକୁ ବାହୁଡ଼ି ଆଇଲେଣି । ଏଣିକି ଆଉ ତାଙ୍କର କି ଚିନ୍ତା ! ଯୋଡ଼ାଏ ଗାଦୀରେ ବସି ରାଜ୍ୟର • ଦୁଃଖ ସୁଖ କଣ ଟିକିଏ ବୁଝି ଦେଉଛନ୍ତି ? ଆଉ କିଛି ଚିନ୍ତା ନାହିଁ ଯେ, ରହିଲା ଖାଲି ପୁଅ ଚିନ୍ତା । ଆଜି ଗୋଟାଏ କଣ ଭଲ ଦିନ ବୋଲି ଶୁଣୁ ଏହିକ୍ଷଣି ଗଙ୍ଗା ଯମୁନାକୂଳରେ ସ୍ନାନ• ବଢାଇ ରାଣୀଙ୍କ ଗହଣରେ ପୁର ଭିତରକୁ ବିଜେ କରିଚନ୍ତି ! ସେଠାଇଁ ଏହିକ୍ଷଣି ଅତର ଫୁଲ ଚନ୍ଦନ ଲାଗି ହେଉଥିବେ ! ତେବେ ଏତିକି ବେଳ ଉଣ୍ଡି କରି ଗଲେ ହେବ—ମୋହ ଦେହରେ ବି ଚୁଆ ଚନ୍ଦନ ଟିକିଏ ଲାଗିଯିବ ।

(ନେପଥ୍ୟେ)—ଅହା ! ମହାରାଜାଙ୍କ ସେହି ମଣିଟିକି ଖଣ୍ଡିଏ ରଙ୍ଗତାଳପତ୍ର ଖିମାରେ, ପାଠକନାରେ ଗୁଡ଼ାଇ କରି ଅଣାଥିଲି । ଶାଗୁଣାଟାଏ ତାକୁ ମାଉଁସ ବିଚାରି ଝାମ୍ପି ନେଇ ଚାଲିଗଲା ।

ବିଦୂ—(ଶୁଣି) ବଡ ବ୍ୟାଘାତ ହେଲା ! ମହାରାଜ ସେ ମଣିକି ଭାରି ଭଲ ପାନ୍ତି । ଅରେ ! ଶୁଣୁତ ସେଥିପାଇଁ ବେଶବାସ ନ ସରୁଣୁ ଆସନରୁ ଉଠି ଏଇ ଆଡ଼କୁ "ସଁ ସଁ, ହୋଇ ଆସୁଚନ୍ତି । ମୁ ତେବେ ପଛ ପଟକୁ ଯାଏଁ ଭାରି । (ପ୍ରସ୍ଥାନ)

(ଉଦ୍ବିଗ୍ନ ଭାବରେ ରାଜା, ସାରଥି, କଞ୍ଚୁକୀ, ରୈବତକ ଓ ପରିଭାଜନ ପ୍ରବେଶ ।)

ରାଜା—ରୈବତକ, ଦେଖ ସେ ଚୋର ପକ୍ଷୀ କୁଆଡେ଼ ଗଲା ? ରକ୍ଷକ ଗୃହରେ ପୁଣି ସର୍ବ ପ୍ରଥମେ ଚୋର ?

କଞ୍ଚୁ—ଦେଖିବା ହଉ ମଣିମା, ହେଇଟି ସେଇ ଚଢେଇଟାର ଥଣ୍ଟରେ ମଣିଦିହର ସୁନାସୂତାଟି ଓହଳଚି । ଯେତେବେଳେ ସେ ଚଳଚଳ ହେଉଚି ସେତେବେଳେ ସୂତାରେ ଗୋଟାଏ ଗାର କାଟି ଦେଲା ପରି ଦିଶୁଚି ।

ରାଜା—ଅଚ୍ଛା, 'ଦେଖୁଛ (ଦେଖି) ଓହୋ, ସେଠାରେ ଯାଇଁ ସେ ପକ୍ଷୀ ? ଗ୍ରୈବ ମଣି ସହିତ ସ୍ୱର୍ଣ୍ଣସୂତ୍ରକୁ ଯେନ ଆକାଶରେ ଅଙ୍ଗାର ଚକ୍ରପରି ବୁଲୁଛି । ଅଚ୍ଛା ବର୍ତ୍ତମାନ କଣ କର୍ତ୍ତବ୍ୟ !

ବଟୁ—(ନିକଟକୁ ଆସି) ମହାରାଜ, ଆଉ ତାଠିଁ ଦୟା ମାୟା କଣ ? ଚୋରକୁ ଦଣ୍ଡ ଦେବା ବିଧି ।

ରାଜା—ଯଥାର୍ଥ କହୁଛ । ଧନୁ ଆଣ ଧନୁ—

ପରିଜନ—ଆଜ୍ଞା, (ପ୍ରସ୍ଥାନ)

ରାଜା—କାହିଁ ସେ ପକ୍ଷୀଟାତ ଆଉ ଦେଖା ଯାଉ ନାହିଁ ?

ବଟୁ—ହେଇଟି-ହେଇଟି, ବଗିଚାର ଦକ୍ଷିଣକୁ ପଳେଇଚି ।

ରାଜା—(ଦେଖି) ହିଁ-ହିଁ, ଏଥର ଦେଖିଲି । ସେ ମଣିକି ଯେନ ଇତସ୍ତତଃ ହେଉଛି । ଆହା ! ସେ ମଣିଟି ଦିଗ୍‌ବଧୂମସ୍ତକରେ ଅଶୋକ କଳିକାପରି ଶୋଭା ପାଉଛି ।

(ଧନୁ ହସ୍ତରେ ଯବନୀର ପ୍ରବେଶ)

ଯବନୀ—ମଣିମା, ହେଇଟି ଧନୁ ଆଉ ଶର ।

ରାଜା—ଆଉ ଏତେବେଳେ ଧନୁ କଣ ହେବ ? ସେ ଚୋରତ ବହୁତ ଦୂରକୁ ଚାଲିଗଲାଣି । ଦେଖ, ବହୁତ ଦୂରକୁ ଗଲେ ବି ସେ ମଣିଟି ଅଳ୍ପ ଝଟକୁଛି । ରାତିରେ ମଙ୍ଗଳଗ୍ରହ ଉପରେ ମେଘ ଥିଲେ ଯେଉଁ ପରି ଦିଶେ ଏ ଠିକ୍ ସେହିପରି ଦିଶୁଅଛି । (କଞ୍ଚୁକୀକୁ ଚାହିଁ) କଞ୍ଚୁକି,

କଞ୍ଚୁ—ମହାରାଜ,

ରାଜା—ଆମ୍ଭର ଆଜ୍ଞା ମତେ ଏ ନଗରର ପ୍ରହରୀମାନଙ୍କୁ ଜଣାଇ ଦିଅ ଯେ, ସେହି ପକ୍ଷୀ ଅବଶ୍ୟ କୌଣସି ବୃକ୍ଷରେ ଆଜି ଆଶ୍ରୟ ନେବ, ଅତଏବ ସମସ୍ତେ ଆଜି ତାହାର ସନ୍ଧାନ କରିବେ ।

କଞ୍ଚୁ—ଯେ ଆଜ୍ଞା, (ପ୍ରସ୍ଥାନ)

ବିଦୂ—ଅକ୍ଷଣ ଏଥର ବସନ୍ତୁ । ସେ ମଣିଗୋଟିର ବୃଧାଉଁଅଛନ୍ତି ଯାଉ ଛମୁଙ୍କ ହାତରୁ କେବେ ଉଧୁରି ଯିବ ନାହିଁ ।

(ଉଭୟର ଉପବେଶନ)

ରାଜା—ବୟସ୍ୟ, ମୁଁ ତାକୁ ଯେ ଗୋଟାଏ ବହୁମୂଲ୍ୟ ମଣି ବୋଲି ଭଲ ପାଏଁ ତାହା ନୁହେ । ସେହି ମଣିଦ୍ୱାରା ପ୍ରିୟତମା ସହିତ ମୋହର ମିଳନ ହୋଇଅଛି । ଏଣୁ ସେ ମୋହର ଅତି-ପ୍ରିୟ ବସ୍ତୁ ।

କଞ୍ଚୁ—(ପ୍ରବେଶ କରି) ମହାରାଜ, ଛମୁଙ୍କର କୋପାନଳ ତୀକ୍ଷ୍ଣଶର ରୂପରେ ସେହି ପକ୍ଷୀର ବକ୍ଷ ବିଦାରି କରି ଧରାଶାୟୀ କରିଅଛି । (ସମସ୍ତଙ୍କର ବିସ୍ମୟ) ହେଉଛି, ସେ ମଣିକି ଧୋଇ କରି ଅଣିଛି । ବର୍ତ୍ତମାନ କାହାକୁ ଦେବ ?

ରାଜା—ଅରେ, ରେତକ, ଏହାକୁ ନେ-କୋଷ ପେଟିକରେ ରଖି ଦେବୁ ।

କିରାତ—ଆଜ୍ଞା, ( ମଣି ନେଇ ପ୍ରସ୍ଥାନ । )

ରାଜା—(କଞ୍ଚୁକୀ ପ୍ରତି ) କଞ୍ଚୁକି, ଏ କାହାର ଶର କହି ପାରିବ ?

କଞ୍ଚୁ—ଆଜ୍ଞା, ନାମ ଲେଖା ହେଲାପରି କଣ ଦିଶୁଛି ! ମୋ ଆଖିକି ଆଉ ଅକ୍ଷର ଭଲ ଦିଶୁ ନାହିଁ ।

ରାଜା—ତାହା ହେଲେ ମୋ ଆଗକୁ ଅଣ, ଦେଖେଁ ?

କଞ୍ଚୁ—(ତଥା କରଣ ଓ ପ୍ରସ୍ଥାନ ।)

ବିଦୂ—କଣ ବିଚୁରୁ ଛନ୍ତି ?

ରାଜା—ଏହି ପକ୍ଷିହନ୍ତାର ନାମାକ୍ଷର ଶୁଣ ! (ପାଠ)

ବିଦୂ—ମନ ଲଗାଇ ଶୁଣୁଚି ।

ରାଜା—ଉର୍ବଶୀ ଜନନୀ ପିତା ପୁରୁରବା ଯାର
ରିପୁ ଆୟୁ କ୍ଷୟକାରୀ ଆୟୁର ଏ ଶର ।

ବିଦୂ—ଆହା ! ଆଜି ବଡ ଭାଗ୍ୟ ! ଆପଣଙ୍କର ପୁତ୍ରଟିଏ ହେଲାଣି !

ରାଜା—ବୟସ୍ୟ, କିପରି ହେଲା ! ନୈମିଷେୟ ଯଜ୍ଞକୁ ଯିବା ସମୟ ବ୍ୟତିରେକେ ଆଉ ତ ଉର୍ବଶୀଙ୍କର ମୋଠାରୁ ଅଦେଖା ବିଚ୍ଛେଦ ଘଟି

ନାହିଁ ! ଅନ୍ତୁର ମଧ୍ୟ ମୁଁ କେବେ ତାଙ୍କର ଗର୍ଭଲକ୍ଷଣ ଦେଖି ନାହିଁ । ତେବେ ଏ ସନ୍ତାନ କାହୁଁ ଆସିଲା ? ମାତ୍ର ଏତିକ ମନେ ପଡୁଛି ତାଙ୍କୁ କିଛିକାଳ ଅଳସ ଥିଲା ପରି ଦେଖିଛି । ସେତେବେଳେ କୁଚାଗ୍ର ଈଷତ୍ ନୀଳବର୍ଣ୍ଣ ଅଙ୍ଗ, ମୁଖମଣ୍ଡଳ ଲବଳୀଫଳପରି ପାଣ୍ଡୁର ଦେଖା ଯାଉଥିଲା ।

ବିଦୂ—ଆପଣ କଣ ଏ ସାମାନ୍ୟ ସ୍ତ୍ରୀଙ୍କ ପରି ଉର୍ବଶୀଙ୍କି ଭାବୁଛନ୍ତି ପରା ? ଅପ୍ସରିମାନଙ୍କ କଥା ବୁଝିବା ସହଜ ନୁହେ । ମନ୍ତ୍ରବଳରେ ସେମାନଙ୍କର ସବୁ କଥା ପରା ଗୁପ୍ତ ଥାଏ ?

ରାଜା—ହଉ, ତୁମ୍ଭର କଥା ହେଲା, କିନ୍ତୁ ପୁତ୍ରଗୋପନ କରିବାର ଅଭିପ୍ରାୟ କଣ ?

ବିଦୂ—କେଜାଣି ମତେ ଦରବୁଢୀ ବୋଲି ମହାରାଜା ଯେବେ ତ୍ୟାଜ୍ୟ କରିବେ !

ରାଜା—ବୟସ୍ୟ, ପରିହାସ କର ନାହିଁ । ଭାବି କରି କହ ।

ବିଦୂ—ମହାରାଜ, ଦେବତାମାନଙ୍କର ରହସ୍ୟ ବୁଝିବ କିଏ ?

(କଞ୍ଚୁକୀର ପ୍ରବେଶ ।)

କଞ୍ଚୁ—ମହାରାଜ, ଚ୍ୟବନ ମହର୍ଷିଙ୍କ ଆଶ୍ରମରୁ ଜଣେ ତାପସୀ ଗୋଟିଏ ରାଜକୁମାର ସଙ୍ଗରେ ଘେନି ଆପଣଙ୍କ ଦର୍ଶନ ଲାଗି ଆସିଛନ୍ତି ।

ରାଜା—ତୁହିଁଙ୍କୁ ଅବିଳମ୍ବେ ଏଠାକୁ ଆଣ ।

କଞ୍ଚୁ—ଆଜ୍ଞା, (ପ୍ରସ୍ଥାନ ଏବଂ ଧନୁର୍ଦ୍ଧର ଓ କୁମାର ତାପସୀ ସହିତ ପୁନଃ ପ୍ରବେଶ ।)

ବିଦୂ—(ଦେଖି) ଏଇ ସେହି କ୍ଷତ୍ରିୟ କୁମାର ? ଯାହାଙ୍କ ଶରରେ ପକ୍ଷୀ ବିଚାରାଟି ପ୍ରାଣ ହରେଇଲା ? ଆପଣଙ୍କ ସଙ୍ଗେ ତ ଏ ଖୁବ ମେଳ ଖାଉଛି ।

ରାଜା—ହଁ, ବୟସ୍ୟ ଏହାକୁ ଦେଖି ମୋହର ଚକ୍ଷୁ ଲୋତକପୂର୍ଣ୍ଣ ହୋଇ ଗଲାଣି । ହୃଦୟ ବାତ୍ସଲ୍ୟବନ୍ଧନରେ ଯେପରି ବାନ୍ଧି ହୋଇ

ଯାଉଛି । ଆଉ ଅତ୍ୟନ୍ତ ଆନନ୍ଦରେ ମୋହର ରୋମାଞ୍ଚ ସଙ୍ଗେ ଧୈର୍ଯ୍ୟ ଲୋପ ହୋଇ ପଡୁଛି । ଇଚ୍ଛା ହେଉଛି କେମିତ ଥରେ ଗାଢ଼ ଆଲିଙ୍ଗନ କରନ୍ତ !!

କଞ୍ଚୁ—ଏହିଠାରେ ଠିଆ ହୁଅନ୍ତୁ । (ତାପସୀ ଓ କୁମାରର ଅବସ୍ଥାନ)

ରାଜା—(ନିକଟକୁ ଯାଇ) ଭଗବତି, ପ୍ରଣାମ ।

ତାପ—ମହାରାଜ, ଚନ୍ଦ୍ର ବଂଶ ଉଜ୍ଜ୍ୱଳ କର । (ସ୍ୱଗତ) ବଡ଼ ଆଶ୍ଚର୍ଯ୍ୟ କଥା ! ନ କହିଲେ ମଧ୍ୟ ଏହି ରାଜାଙ୍କ ସଙ୍ଗେ ବତ୍ସର ଔରସ ସମ୍ବନ୍ଧ ଅଛି ବୋଲି ଉତ୍ତମରୂପେ ଜଣା ପଡୁଛି । (ପ୍ରକାଶ୍ୟେ) ବତ୍ସ ! ପିତାଙ୍କୁ ପ୍ରଣାମ କର ।

କୁମାର—(ଧନୁ ସହିତ କୃତାଞ୍ଜଳି ହୋଇ-ପ୍ରଣାମ ।)

ରାଜା—ବତ୍ସ, ଦୀର୍ଘଜୀବୀ ହୁଅ ।

କୁମାର—(ସ୍ପର୍ଶ ଅନୁଭବ କରି ସ୍ୱଗତ) ଆହା, ଏହି ସ୍ନେହ କଥା ପଦକ ଶୁଣି ମନେ ହେଉଛି, ଯେମିତ ଏ ମୋହର ପିତା, ଆଉ ମୁଁ ଏହାଙ୍କର ଔରସ ପୁତ୍ର । ଯେଉଁମାନେ ଆଜନ୍ମରୁ ପିତାଙ୍କ କୋଳରେ ବଢ଼ି ଥିବେ, ନ ଜାଣେ ସେମାନଙ୍କର ପିତାଙ୍କ ପ୍ରତି କିପରି ଭାବ ହେଉଥିବ ?

ରାଜା—ଭଗବତି, ଏଠାକୁ ଶୁଭାଗମନର କାରଣ କଣ ?

ତାପ—ଶୁଣନ୍ତୁ ମହାରାଜ, ଏହି ଶିଶୁଟିକୁ ଜନ୍ମ ହେବା ମାତ୍ରେ ଉର୍ବଶୀ କାହିଁକି କେଜାଣି ମୋ ପାଖରେ ରଖି ଦେଇ ଚାଲି ଗଲେ । କ୍ଷତ୍ରିୟମାନଙ୍କର ଜାତକର୍ମାଦି ଯେଉଁ ସବୁ ବିଧି ଅଛି, ତାହା ସବୁ ଏହାର ନିଜେ ଚ୍ୟବନମହର୍ଷି କରିଅଛନ୍ତି । ଅନ୍ତର ମଧ୍ୟ କୁମାର ସମସ୍ତ ଶାସ୍ତ୍ର ପାଠ କରି ବର୍ତ୍ତମାନ ଧନୁର୍ବିଦ୍ୟାରେ ମଧ୍ୟ ପାରଗ ହୋଇଛି ।

ରାଜା—ଏହାର ତାହା ହେଲେ ଅଭିଭାବକ ଅଛନ୍ତି ।

ତାପ—ମାଏ ଆଜି ଏ ଆଶ୍ରମରୁ ଫଳମୂଳ କୁଶ ସମିଧ ଆଣିବା ପାଇଁ ଅରଣ୍ୟକୁ ଆସି ଗୋଟିଏ ଆଶ୍ରମବିରୁଦ୍ଧ କାର୍ଯ୍ୟ କଲା ।

ବଟୁ—କଣ; କି କାର୍ଯ୍ୟ ?

ତାପ—ଶୁଣିଲ, କେଉଁଠି ଶକୁନିଟିଏ ମାଂସ ଖଣ୍ଡେ ନେଇ ଗୋଟିଏ ଗଛ ଉପରେ ବସିଥିଲା । ଏ ତାହାକୁ ଲକ୍ଷ୍ୟ କରି ବାଣ ମାରିଛି ।

ରାଜା—ହୁଁ-ତାହା ପରେ କଣ ହେଲା ?

ତାପ—ତାହା ପରେ ମହର୍ଷି ଏକଥା ଜାଣି ପାରି ମୋତେ ଆଜ୍ଞା ଦେଲେ ଯେ, ଏହି ଦତ୍ତ ବାଳକଟିକୁ ଅଦ୍ୟ ଉର୍ବଶୀଙ୍କୁ ପ୍ରତ୍ୟର୍ପଣ କରି କରି ଆସ । ସେଥି ପାଇଁ ଉର୍ବଶୀଙ୍କ ନିକଟକୁ ଆସିଲି ।

ରାଜା—ଅଚ୍ଛା, ଆପଣ ଅଗ ଆସନରେ ବସନ୍ତୁ । (ସଦ୍ୟ ଆନୀତ ଆସନ-ଦ୍ୱୟରେ ଉପବେଶନ ।) କଞ୍ଚୁକି ! ଉର୍ବଶୀଙ୍କି ଏଠାକୁ ଆସିବାକୁ କହି ଦିଅ ।

କଞ୍ଚୁ—ଆଜ୍ଞା, (ପ୍ରସ୍ଥାନ)

ରାଜା—( କୁମାରକୁ ଦେଖି, ଗୀତ ରଙ୍ଗେ । )

ଆସ ଆରେ ବତ୍ସ ମୋର କୋମଳ କୋଳକୁ
ତୃପ୍ତି ତୃପ୍ତ ହେଉ ପ୍ରାଣ ତୋହର ଗଣ୍ଡକୁ !
ଉଲ୍ଲସାଅ ଚିତ୍ତ ଅରେ ବାଳକ ଦ୍ୟୁ-ମଣି
ଦ୍ରବେ ଯେହ୍ନେ ଚନ୍ଦ୍ର କାନ୍ତ-ମଣିକ ଚନ୍ଦ୍ରମା !
ଧନ୍ୟ ଅଜ ଦିନ ମୋର ଧନ୍ୟ ଏ ଜୀବନ
ପୁତ୍ର ଅଙ୍ଗ, ବକ୍ଷେ ମୋର ଯେସନ ଚନ୍ଦନ ।

(ଆଲିଙ୍ଗନ)

( ଆଲିଙ୍ଗନାନନ୍ତର ) ବତ୍ସ ! ଏହି ବ୍ରାହ୍ମଣ ତୁମ୍ଭ ପିତାଙ୍କର ସହଚର । ଏହାଙ୍କୁ ନିର୍ଭୟରେ ପ୍ରଣାମ କର ।

କୁମା—ମୋତେ. ଅଜ୍ଞ ତାଙ୍କୁ କଣ ? ଆଶ୍ରମରେ ତ ଏହିପରି କେତେ ଲାଞ୍ଜମୁହାଁ ବାନର ଦେଖି ଥିବେ ।

କୁମା—( ସସ୍ମିତେ ) ତାତ, ପ୍ରଣାମ ।

ବଦୂ—ବୁଢା ହୋଇଥାଅ-ବାବୁ ।

( ଉର୍ବଶୀ ଏବଂ କଞ୍ଚୁକୀର ପ୍ରବେଶ । )

କଞ୍ଚୁ—ଏଣେ ଏଣେ ଦେବୀ ।

ଉର୍ବ—( କୁମାରକୁ ଦେଖି-ସ୍ୱଗତ ) ମହାରାଜାଙ୍କ କୋଳରେ ଏଇଟି କିଏ ବସିଚ, ମହାରାଜ ପୁଣି ଏହାର ବାଳ ଶାଉଁଳି ଦେଉଚନ୍ତି ! (ତାପସୀଙ୍କି ଦେଖି ) ଏହା ସାଙ୍ଗରେ କଣ ସତ୍ୟବତୀ ଅସିଚନ୍ତି ! ତେବେ କଣ ଅୟୁ ମୋର ଏତେ ବଡ଼ ହୋଇ ଗଲାଣି ?

ରାଜା—( ଦେଖି ) ବତ୍ସ ଦେଖ, ତୁମ୍ଭର ଗର୍ଭଧାରଣୀ ଅସିଲେଣି । ତୁମ୍ଭକୁ ଦେଖି ସ୍ତନବାସରୁ ତାଙ୍କର ସ୍ନେହ ରସ ବୋହୁ ପଡୁଛି !

ତାପ—ବତ୍ସ, ଜନନୀଙ୍କି ପାଛୋଟି ଅଣ ।

ଉର୍ବ—ଅର୍ଯ୍ୟେ, ପାଦବନ୍ଦନ କରୁଚ ! ( ପାଦତଳେ ପତନ । )

ତାପ—ବତ୍ସେ, ପତିସୌଭାଗ୍ୟବତୀ ହୁଅ ।

କୁମା—ଅର୍ଯ୍ୟେ, ପ୍ରଣାମ ।

ଉର୍ବ—( ଅଉଁଶି ) ବତ୍ସ, ପିତୃଭକ୍ତ ହୁଅ । ( ରାଜାଙ୍କ ପ୍ରତି ) ଜୟ ଜୟ ମହାରାଜ ।

ରାଜା—ପୁତ୍ରବତି ! ଶୁଭାଗମନ କର । ଏହଠାରେ ବସ ।

ଉର୍ବ—ବସନ୍ତୁ ( ସମସ୍ତଙ୍କର ଉପବେଶନ ) ।

ତାପ—ବତ୍ସେ, କୁମାର ବର୍ତ୍ତମାନ ସମସ୍ତ ବିଦ୍ୟା ଶିକ୍ଷା କରି ଧନୁର୍ବେଦ-ଧାରୀ ହୋଇଛି-ପତିଙ୍କ ସମକ୍ଷରେ ତାହାକୁ ବର୍ତ୍ତମାନ ପ୍ରତ୍ୟର୍ପଣ କରୁଅଛି । ତାହା ହେଲେ ମୁଁ ଏଥର ନିଶ୍ଚିନ୍ତ ହେଲି-ଯାଉଛି, ବିଳମ୍ବ ହେଲେ ଅଶ୍ରମ ଧର୍ମରେ ବାଧା ହେବ !

ଉର୍ବ—ଅର୍ଯ୍ୟେ, ଚିରକାଳ ପରେ ଦର୍ଶନ ମିଳି ଥିବାରୁ ଛାଡ଼ିବାକୁ ଅଦୌ ଇଛା ହେଉ ନାହିଁ । ତେଣେ ଫେରେ ନ ଗଲେ ଧର୍ମ

ହାନ ହେବ । ତେବେ ଅଉ ବଳମ୍ବରେ ଫଳ ନାହିଁ-ଯାନ୍ତୁ-ପୁଣି ଦେଖା ହେବ ଯେ ।

ରାଜା—ଭଗବନ୍ତ ! ପୂଜ୍ୟପାଦ ଚ୍ୟବନମହର୍ଷିଙ୍କି ମୋହର ପ୍ରଣାମ ଜଣାଇବେ ।

ତାପ—ହଉ ।

କୁମା—ଭଗବନ୍ତ, ଏତେ କଣ ଯିବ ଭାଇ ? ମୋତେ ତେବେ ନେଇ ଯାଅ ।

ରାଜା—ବତ୍ସ, ତୁମେ ପ୍ରଥମ ଆଶ୍ରମରେ ବାସ କରି ଆସିଛ ? ବର୍ତ୍ତମାନ ଦ୍ୱିତୀୟ ଆଶ୍ରମ ଆଶ୍ରୟ କରିବାର ସମୟ ।

ତାପ—ବତ୍ସ, ପିତାଙ୍କ ବାକ୍ୟ ପାଳନ କର ।

କୁମା—ତାହା ହେଲେ ଭଗବନ୍ତ, ମୋହର ସେହି କ୍ରୀଡା ମୟୂରଟିକୁ ପଠାଇ ଦେବ । ଯେଉଁଟି ସବୁବେଳେ ମୋହ କୋଳରେ ସୁଖେ ଶୋଉଥିଲା ।

ତାପ—ଅଚ୍ଛା ହଉ, ପଠାଇ ଦେବା ।

ଉର୍ବ—ଅର୍ଯ୍ୟେ ! (ପାଦବନ୍ଦନ ।)

ରାଜା—ଭଗବନ୍ତ, ପ୍ରଣାମ ।

ତାପ—ସମସ୍ତଙ୍କର ମଙ୍ଗଳ ହେଉ । [ପ୍ରସ୍ଥାନ] ।

ଉର୍ବ—ସୁନ୍ଦର । ଦେବରାଜ ଇନ୍ଦ୍ର ଯେପରି ପୌଲୋମୀ ଗର୍ଭଜାତ ଜୟନ୍ତକୁ ଲଭ କରି ଧନ୍ୟ ହୋଇଥିଲେ, ସେହିପରି ଆଜି ମୁଁ ତୁମ୍ଭର ଏହି ସୁପୁତ୍ରକୁ ପାଇ କୃତାର୍ଥ ହେଲି ।

ଉର୍ବ—(ସ୍ମରଣ କରି-ବେଦନ ।)

ବଦୂ—ଏ କଣ ! ଗୃହୁଁ ଗୃହୁଁ ଦେବୀ କାହିଁକି ଅଶ୍ରୁମୁଖୀ ହୋଇ ପଡ଼ିଲେ ।

ରାଜା—ସୁନ୍ଦରି, ତୁମର ବେଦନ କାହିଁକି ? ଉପଯୁକ୍ତ ବଂଶଧର ପାଇ ମୋହର ଆଜି ଅନିର୍ବଚନୀୟ ଆନନ୍ଦ ! ତେବେ ପ୍ରିୟତମେ, ଆଉ କାହିଁକି ସ୍ତନଦ୍ୱୟ ଉପରେ ଅଶ୍ରୁ ବିନ୍ଦୁରେ ନୂତନ ହାର ରଚନା କରୁଛ ?

ଉର୍ବ—ମହାରାଜ ! ବହୁଦିନ ପରେ ଆଜି ପୁତ୍ରକୁ ଦେଖି କରି ଅତି ଆନନ୍ଦରେ ଗୋଟିଏ କଥା ପାସୋରି ଯାଇଥିଲି । ଏହିକ୍ଷଣି ଇନ୍ଦ୍ରଙ୍କ ନାମ ଧରିବାରୁ ସେ କଥାଟି ମନେ ପଡ଼ିଗଲା । ସେଥି ପାଇଁ ମନରେ ବଡ ଦୁଃଖ ହେଉଛି ।

ରାଜା—କଣ ସେ କଥା ?

ଉର୍ବ—ମହାରାଜ, ଯେଉଁ ଦିନ ମୁଁ ଆପଣଙ୍କ କଥା ଭାବୁ ଥିଲି ବୋଲି ଗୁରୁଦେବ ଶାପ ଦେଲେ, ସେହି ଦିନ ଦେବରାଜ ମୋତେ ଡାକି କରି ଏହି କଥା କହିଥିଲେ ଯେ—

ରାଜା—କଣ କହିଥିଲେ ?

ଉର୍ବ—ଯାଅ, ଯେଉଁ ଦିନ ସେ ରାଜର୍ଷି ତୁମ ଗର୍ଭଜାତ ପୁତ୍ରର ମୁଖ ଦର୍ଶନ କରିବେ, ସେହି ଦିନ ଫେର୍ ମୋ ନିକଟକୁ ଆସିବ । ସେଥି ପାଇଁ ମୁଁ ଚିରବିଚ୍ଛେଦ ଘଟିବା ଭୟରେ ପୁତ୍ର ଜନ୍ମ ହେବା ମାତ୍ରକେ ତାହାକୁ ଚ୍ୟବନମହର୍ଷିଙ୍କ ଆଶ୍ରମରେ ସତ୍ୟବତୀଙ୍କ ହାତରେ ସମର୍ପଣ କରି ଦେଇଥିଲି । ଏବେ ସେ ମୋହର ପୁତ୍ରକୁ ପିତୃସେବାର ଯୋଗ୍ୟ ଦେଖି ପ୍ରତ୍ୟର୍ପଣ କରି ଦେଇ ଗଲେ । ତେବେ ଆଜିଠାରୁ ଆପଣଙ୍କର ମୋହର ସହବାସ ଶେଷ ହେଲା !

[ସମସ୍ତଙ୍କର ଦୁଃଖାଭିନୟ ଓ ରାଜାଙ୍କର ମୂର୍ଚ୍ଛା । ]

ସର୍ବେ—ମହାରାଜ, ଶାନ୍ତ ହୁଅନ୍ତୁ, ଶାନ୍ତ ହୁଅନ୍ତୁ ।

କଞ୍ଚୁ—ମହାରାଜ, ଆଶ୍ୱସ୍ତ ହୁଅନ୍ତୁ ।

ବିଦୂ—ଅରେ ସର୍ବନାଶ–ସର୍ବନାଶ ।

ରାଜା—( ଆଶ୍ୱସ୍ତ ହୋଇ ) ଓ ହୋ, ଦୈବ ସୁଖ ସମ୍ଭୋଗରେ କେତେ ପ୍ରତିକୂଳ ! ( ନିଃଶ୍ୱାସ ପକାଇ ) ପୁତ୍ର ମୁଖ ଦର୍ଶନ କରି ଟିକିଏ ଆନନ୍ଦିତ ହୋଇଥିଲି ! ତାହା ପଛେ ପୁଣି ସୁନ୍ଦରି ! ତୁମ୍ଭର ଦୁର୍ବିଷହ ବିରହ ! ଅତିପତ୍ତାପିତ ବୃକ୍ଷ ପ୍ରଥମେ ଟିକିଏ ବର୍ଷା

ଜଳରେ ଶୀତଳ ହୋଇଥାଏ, ତାହା ପଛେ ପଛେ ବଜ୍ର ପତିତ ହେଲେ ଯେପରି ହୁଏ, ମୋହର ଏବେ ସେହିପରି ଦଶା ! !

ବିଦୂ—ମହାରାଜ, ସେ ଅର୍ଥରୁ ତ ଏବେ ଅନର୍ଥ ଉପୁଜିଲାଣି । ମୋ ବିଚାରରେ ଆପଣଙ୍କର ଏଣିକି ବକଳ ପିନ୍ଧି ବନକୁ ଯିବା ଭଲ ।

ଉର୍ବ—ହା ! ମୋହର କେଡେ ହୀନ କପାଳ ! ମହାରାଜ ମତେ କଣ ମନେ କରୁଥିବେ କେଜାଣି ? ଅବା ବିଚାରୁ ଥିବେ ଯେମିତ ପୁଅ ହେଲା, ଆଉ ସେ ଯୋଗ୍ୟ ହେଲା ସେମିତ ମତେ ଛାଡ଼ି ସ୍ୱର୍ଗକୁ ଚାଲି ଯାଉଛି ।

ରାଜା—ନାହିଁ ପ୍ରିୟେ, ତାହା ମୁଁ ଭାବୁ ନାହିଁ । ସୁନ୍ଦରି, ପରାଧୀନ ଜନର ବିଚ୍ଛେଦ ସୁଲଭ । ନିଜର ପ୍ରିୟ ସମ୍ପାଦନ କରିବା ତାହା ପକ୍ଷରେ ଦୁରୂହ । ତେବେ ତୁମ୍ଭେ ଯାଅ, ପ୍ରଭୁଙ୍କ ଆଜ୍ଞା ପାଳନ କର । ମୁଁ ମଧ ଯାଉଛି-ପୁଅ ହସ୍ତରେ ରାଜ୍ୟଭାର ପ୍ରଦାନ କରି ବାନପ୍ରସ୍ଥ ଆଶ୍ରୟ କରିବି ।

କୁମା—ତାତ, ମହାବୃଷଭର ଯୋଗ୍ୟ ଯାନରେ ସାମାନ୍ୟ ବତ୍ସତରକୁ ନେଇ ଯୋଚିବେ ।

ରାଜା—ନାହିଁ ବତ୍ସ, ତାହା ନୁହେ । ଶିଶୁ ହେଲେ ସୁଦ୍ଧା ଯେବେ ଗନ୍ଧଗଜ ହୁଏ, ତେବେ ସେ ଅନ୍ୟ ଗଜମାନଙ୍କୁ ଶାସନ କରି ପାରେ । ଶିଶୁ ସର୍ପର ବିଷ ମଧ ଅତି ଉତ୍କଟ । ରାଜା ବାଳକ ହେଲେ କଣ ହେଲା ? ରାଜ୍ୟଭାର ବହନ କରିବାକୁ ସମର୍ଥ । ସେଥିରେ ବୟସର କିଛି କଥା ନାହିଁ । ଜାତି ହେଉଛି ମୂଳ-କଞ୍ଚୁକି ! କଞ୍ଚୁ—ମହାରାଜ,

ରାଜା—ଅମ୍ଭର ଆଦେଶମତେ ଅମାତ୍ୟଙ୍କୁ ଜଣାଇ ଦିଅ ଯେ, ଆଜ୍ଞାର ଶୀଘ୍ର ରାଜ୍ୟାଭିଷେକର ଆୟୋଜନ କରନ୍ତୁ ।

କଞ୍ଚୁ—(ଦୁଃଖିରେ ପ୍ରସ୍ଥାନ-ସମସ୍ତଙ୍କର ଦୃଷ୍ଟି ରୋଧାଭିନୟ)

ରାଜା—(ଆକାଶକୁ ଚାହିଁ) ଏ କଣ ? ବିନା ମେଘରେ ବିଦ୍ୟୁତ୍ ?

(ନେପଥ୍ୟ—ନାରଦଙ୍କର ଗୀତ)

ଭଜରେ ମନ ରାମ ରାମ, ରାମ ରାମ ରାମ ।
ପାପ ତାପ ହାରୀ, ଜପ ରାମଚନ୍ଦ୍ର ନାମ ॥

ଭକ୍ତ ଜୀବନ ଶରଣ ରାମ ଭଜ ରଘୁକୁଳ ତିଲକ ରାମ
କଳୁଷ ନାଶନ ପ୍ରଭୁ ଶ୍ରୀରାମ, ଶାନ୍ତ ଧାମ ରାମ ।
ଜୟ ସଂକଟ ତାରଣ ରାମ ଜୟ ଭବଭୟ ବାରଣ ରାମ ।
ରକ୍ଷକୁଳ ପତି ରାବଣ ବାମ ସୀତା କାନ୍ତ ରାମ ।

(ଗୀତ ସହ ଊର୍ଦ୍ଧ୍ୱରୁ ନାରଦଙ୍କର ଧୀରେ ପ୍ରବେଶ)

ଉର୍ବ—ଏଇ ଦେବର୍ଷି ଆସୁଚନ୍ତି !

ରାଜା—(ଭୟ କରି ଦେଖି) ଦେବର୍ଷି ନାରଦ ? ହଁ-ହଁ, ନୋହିଲେ ଆଉ କାହାର ଏପରି ଗୋରୋଚନା ପ୍ରାୟ ପିଙ୍ଗଳ ଜଟାଜୁଟ ଆଉ ଶଶିକଳା ପ୍ରାୟ ଉଜ୍ଜ୍ୱଳ ଉପବୀତ ହୁଅନ୍ତା ! ଦୂରରୁ ଗୋଟିଏ ମୁକ୍ତାଫଳ ନିର୍ମିତ କନକାଙ୍କୁର କଳ୍ପତରୁ ପ୍ରାୟ ଦିଶୁଛନ୍ତି । ଅର୍ଘ୍ୟ ଅଣ ଅର୍ଘ୍ୟ ?

ଉର୍ବ—(ଅର୍ଘ୍ୟ ଅଣି) ଏଇ ଭଗବାନଙ୍କର ଅର୍ଘ୍ୟ !

ନାର—(ପ୍ରବେଶ କରି) ମଧ୍ୟମଲୋକପାଳ, ବିଜୟୀ ହୁଅ ।

ରାଜା—ଦେବର୍ଷି, ମୋହର ଏହି ଅଭିବାଦନ ।

ଉର୍ବ—ପ୍ରଣାମ ।

ନାର—ଅବିରହିତ ଦମ୍ପତୀ ହୁଅ ।

ରାଜା—(ଜନାନ୍ତିକେ) ସତେ ଏହା ଘଟିବ ? (ପ୍ରକାଶ୍ୟେ) ଉର୍ବଶୀପୁତ୍ର ଆପଣଙ୍କୁ ପ୍ରଣାମ କରୁଛି ।

ନାର—ଆୟୁଷ୍ମାନ୍ ହେଉ ।

ରାଜା—ଭଗବନ୍ ଏହି ଆସନ ଗ୍ରହଣ କରନ୍ତୁ । (ସମସ୍ତଙ୍କର ଉପବେଶନ) (ସବିନୟେ) ଆଗମନର କି ପ୍ରୟୋଜନ ?

ନାର—ରାଜନ୍, ମହେନ୍ଦ୍ରଙ୍କର ସନ୍ଦେଶ ଶ୍ରବଣ କର ।

ରାଜା—ମନୋଯୋଗ ଦେଇ ଶୁଣୁଛି ।

ନାର—ମନ୍ତ୍ରଦର୍ଶୀ ମହେନ୍ଦ୍ର ଆପଣଙ୍କ ବନପ୍ରସ୍ଥାନବାର୍ତ୍ତା ଜାଣିପାରି ଏହି ଆଦେଶ କରିଛନ୍ତି ।

ରାଜା—କି ଆଦେଶ ।

ନାର—ତ୍ରିକାଳଜ୍ଞ ମୁନିମାନେ ନିରୂପଣ କରିଅଛନ୍ତି ଯେ, ସୁରାସୁର ସମର ଅତି ସନ୍ନିକଟ । ଏ ଯୁଦ୍ଧରେ ତୁମ୍ଭେ କେବଳ ଦେବରାଜଙ୍କର ସହାୟ ହେବ । ଅତଏବ ବର୍ତ୍ତମାନ ତୁମ୍ଭର ଶସ୍ତ୍ରତ୍ୟାଗ କରିବା ଉଚିତ ନୁହେ । ଆଉ ଏହି ଉର୍ବଶୀ ଯାବଜ୍ଜୀବନ ତୁମ୍ଭର ସହଧର୍ମିଣୀ ହେବେ ।

ଉର୍ବ—ଓହୋ, ମୋ ଦେହରୁ କଣ୍ଟା ଗଲା !

ରାଜା—ଦେବରାଜଙ୍କର ମୋ ପ୍ରତି ଏହା ଯଥେଷ୍ଟ ଅନୁଗ୍ରହ ।

ନାର—ତାହା ସତ୍ୟ, କିନ୍ତୁ ସେ ତୁମ୍ଭର କାର୍ଯ୍ୟ କରିବେ—ତୁମ୍ଭେ ମଧ୍ୟ ତାଙ୍କର ଉପକାର କରିବ । ଦେଖ-ସୂର୍ଯ୍ୟ ଅଗ୍ନିର ତେଜକୁ ବୃଦ୍ଧି କରୁଛନ୍ତି । ଅଗ୍ନି ମଧ୍ୟ ନିଜ ତେଜରେ ସୂର୍ଯ୍ୟକୁ ସଂବର୍ଦ୍ଧିତ କରୁଅଛନ୍ତି (ଆକାଶକୁ ଚାହିଁ) ରମ୍ଭା, ନିଜେ ଦେବରାଜ କୁମାରଙ୍କ ଅଭିଷେକନିମିତ୍ତ ଯେଉଁ ସବୁ ସାମଗ୍ରୀ ସଂଗ୍ରହ କରିଥିଲେ, ସେ ସବୁ ଶୀଘ୍ର ଏଠାକୁ ନେଇଆସ ।

ରମ୍ଭା—(ପ୍ରବେଶ କରି) ଦେବର୍ଷି, ଏହି ସେଇ ସବୁ ସାମଗ୍ରୀ ।

ନାର—ବତ୍ସ, ଏହି ଭଦ୍ରପୀଠରେ ବସ ।

ରମ୍ଭା—(କୁମାରକୁ ପୀଠରେ ବସାଇବା)

ନାର—(କୁମାର ମସ୍ତକରେ ଜଳସେଚନ କରି) ରମ୍ଭା, ଏଥର ଶେଷବିଧି ତୁମ୍ଭେ କର ।

(ରମ୍ଭାର ଶେଷବିଧିକରଣ ଏବଂ ସମ୍ମୁଖରେ ଅପ୍ସରାଗଣଙ୍କର ନୃତ୍ୟସହିତ)—

ଗୀତ ।

ଶୀତ ବୃତ ମାରୁତ । ଦିବସ ଯାମିନୀ ସୁମନବାସିତ । ୦ ।

ବେଣୁ ସୁଷିର ବାଇ ସୁସ୍ୱନେ ଅଭିଷେକଗୀତ କୁଞ୍ଜବନେ

ଉର୍ବଶୀ ନନ୍ଦନ-ବନେ ସିଂହାସନ

ଗାଅ ଗାଅ ଗାଅ-ଭାରତ ।

ତୁଙ୍ଗ ତରଙ୍ଗ ଶୃଙ୍ଗ ସଘନେ    ଅକୂପାରେ ଗାଅ ଉଚ୍ଚତାନେ
ବସନ୍ତେ କପଟ-ଆଜବଜଶିଖ
ଗୃହେଁ ଗୃହେଁ ଅସ୍ତ୍ର-ଦେବପିତ ।
(ପ୍ରସ୍ଥାନ ।)

ରମ୍ଭା—(ଶେଷବିଧି ସାରି) ବତ୍ସ ! ସମସ୍ତଙ୍କୁ ଏଥର ଯଥାବିଧି ନମସ୍କାର କର ।

କୁମା—(ଯଥାକ୍ରମେ ପ୍ରଣାମ କରଣ)

ନାର—'ସ୍ୱସ୍ତି ତେ'

ରାଜା—ବଂଶବର୍ଦ୍ଧନ ହୁଅ । ଉର୍ବ—ପିତାଙ୍କର କଥା ଘେନ ।

(ବୈତାଳିକ ଦ୍ୱୟର ସଙ୍ଗୀତ ।)

ବାଜ ବୀଣା-ମୃଦଙ୍ଗ, ବାଜ ଶଙ୍ଖ ବାଜରେ ।
ଗାଅ ଭଟ୍ଟ-ବାଟ ଘାଟ, ପୂଜ ସବୁ ଅଜରେ । ୦ ।
ଚନ୍ଦ୍ରକୁଳର ନୃପକୁମାର    ଦେଖ ଉର୍ବଶୀ ହୃଦୟ ହାର
ନକ୍ଷିଲ ଭାରତ ମଣ୍ଡଳେ ଆଜ, ଅସ୍ତୁ ରାଜ ରାଜରେ ।
ବେଳା ବଳୟ ଜଳଧିବାର    ଲହରି ନଟର କରପ୍ରସାର
ତରଳ ଫେନଲ ମଉଳ ଦୋଳ, ନାଚୁଛି ତ-ବ୍ୟାଜରେ ।
କୀର ବରହି କୋକିଳବୃନ୍ଦ    ବନ ଉପବନେ ମିଳି ମିଳନ୍ଦ
ଗାଅନ୍ତୁ ଏ ଗୀତ ଧରି ସୁଛନ୍ଦ, ସାଜ ବନ୍ଦି ସାଜରେ ।    (ପ୍ରସ୍ଥାନ)

ରମ୍ଭା—(ଉର୍ବଶୀ ନିକଟକୁ ଯାଇ) ସହି, ବଡ଼ଭାଗ୍ୟ—ଆଜି ପୁତ୍ରର ଅଭିଷେକ ଦେଖିଲ ? ପୁଣି ପତିବରହ ଅବେଳୀ ହବନାହିଁ ଶୁଣିଲ ।

ଉର୍ବ—ହଁ । ଏ ଭାଗ୍ୟ ତୁମ୍ଭଙ୍କର ଏକାପରି । (କୁମାରକୁ ଧରି) ବତ୍ସ ! ବଡ଼ମାଙ୍କୁ ନମସ୍କାର କର ।

ରାଜା—ରହ, ରହ, ତୁମ୍ଭେ ତାଙ୍କ ପାଖକୁ ଯିବା ।

ନାର—ରାଜନ, ତବ ପୁତ୍ର ଆୟୁର ଯୌବରାଜ୍ୟାଭିଷେକ କରି ମୋହର ଆଜି କାର୍ତ୍ତିକେୟଙ୍କୁ ମହେନ୍ଦ୍ରଙ୍କର ସେନାପତି ପଦରେ ଅଭିଷେକ କରିବା କଥା ମନେ ପଡୁଛି ।

ରାଜା—ଦେବର୍ଷି, ଏ ସବୁ ଦେବେନ୍ଦ୍ରଙ୍କର ଅନୁଗ୍ରହ ।

ନାର—ରାଜନ୍, ଅଉ ସେ ତୁମ୍ଭର କି ପ୍ରିୟ କାର୍ଯ୍ୟ କରିବେ ?

ରାଜା—ଏଥିରୁ ବଳି ଯଦି ଅଉ ପ୍ରିୟ କାର୍ଯ୍ୟ ଥାଏ, ତାହାହେଲେ ଦେବରାଜଙ୍କ ପ୍ରସାଦରୁ ଏତିକି ହେଉ ଯେ, ଲକ୍ଷ୍ମୀ ସରସ୍ୱତୀଙ୍କର ଯେଉଁ ପରସ୍ପର ବିରୋଧ-ଭାବ ଅଛି, ସଜ୍ଜନମାନଙ୍କ ନିକଟରେ ତାହା ନ ରହି ଏକବ ମିଳନ ହେଉ ।

(ସମସ୍ତଙ୍କର ପ୍ରସ୍ଥାନ ଓ ପଟକ୍ଷେପଣ)

[ଲକ୍ଷ୍ମୀ ସରସ୍ୱତୀଙ୍କର ଏକବ ଆବିର୍ଭାବ ଓ ନଟୀମାନଙ୍କର ନୃତ୍ୟସହ]

ଗୀତ ।

ଲକ୍ଷ୍ମୀରାଣୀ ବୀଣାପାଣି ନାମ ଗାଅ ଜନେ ଶୁଭ ସୁମନେ ।
ପୂରବନ ଗିରି ସାଗର ଗଗନେ　　ସଙ୍ଗୀତରେ ଗାଉ ଏ ବିଶ୍ୱ ଭୁବନ
ଏ ନବ ମିଳନେ-ନବ ଜାଗରଣେ,　　ପ୍ରକାଶୁ ଆନନ୍ଦ ପ୍ରୀତି-ଉତ୍ସବନେ ।
ସୁରଭି କୁସୁମ ତୋଳି
ଅଗୁରୁ ଚନ୍ଦନ ଘୋଳି
ପୂଜିବା ଆଜ ସଜନ !　　ତାଙ୍କ କଞ୍ଜଚରଣେ ।
ଭେଟିବା ଆସ ସୁମନ　　ତାଙ୍କ କଞ୍ଜଚରଣେ ।
ବିବିଧ ବନଜ ଫୁଲ
କରିଣ ସଙ୍ଗୀନ, ଠୁଳ
ଗୁନ୍ଥିବା ଅସ ହାରକୁ　　ତାଙ୍କ କଣ୍ଠଭରଣେ ।
ଢାଳିବା ମନ ପ୍ରାଣକୁ　　ତାଙ୍କ ପଦ-ତୋଷଣେ ।

(ନଟୀମାନଙ୍କର ପ୍ରସ୍ଥାନ ଏବ ଯବନିକା ପତନ)



ସମାପ୍ତ ।

Mukur Press, Cuttack.

# ମୁକୁର ।



**ମାସିକ ପତ୍ର ।** ଅଗ୍ରିମ ବାର୍ଷିକ ମୂଲ୍ୟ ଟ୨ ଙ୍କା ଛାତ୍ରମାନଙ୍କ ନିମନ୍ତେ ୧ ଟଙ୍କା । ମୁକୁର ଯନ୍ତ୍ରାଳୟରେ ଓଡ଼ିଆ, ବଙ୍ଗଳା, ଇଂରାଜୀ ଏବଂ ନାଗରାକ୍ଷରର ପୁସ୍ତକାଦି ଉଚିତ ମୂଲ୍ୟରେ ସୁଚାରୁରୂପେ ମୁଦ୍ରିତ କରା ଯାଉ-ଅଛି । ନିମ୍ନଲିଖିତ ପୁସ୍ତକମାନ ମୁକୁର କାର୍ଯ୍ୟାଳୟରେ ପ୍ରାପ୍ତବ୍ୟ ।

| | | |
|---|---|---|
| ବିକ୍ରମୋର୍ବଶୀ | (ନାଟକ) | ଟ ୦ । |
| ପ୍ରବନ୍ଧପାଠ | (ମାଟ୍ରିକୁଲେଶନ୍ ପାଠ୍ୟ) | ଟ ୦ ୳ |
| ମୂଳଶବ୍ଦବୋଧିକା | (ପ୍ରାଇଜ ଏବଂ ଲାଇବ୍ରେରୀ | ଟ ୦ ୵ |
| ସୁଲକ୍ଷଣା | (ଅଭିମନ୍ୟୁ) | ଟ ୦ ୵ |
| ରସବତୀ | ( ଅଭିମନ୍ୟୁ—ଯନ୍ତ୍ରସ୍ଥ ) | ଟ ୦ ୴ |
| ପୁନର୍ମୂଷିକୋଭବ | (ଗଳ୍ପ, ଫକୀର ମୋହନ) | ଟ ୦ ୵ ୭ |
| ପ୍ରେମିକ ପ୍ରେମିକା | (ଗଳ୍ପ, Romeo Juliet) | ଟ ୦ ୵ |



